ଯୁକ୍ତରାଷ୍ଟ୍ର ଯାଇ ନଥିଲେ । ସେ ଭାରତର ଅନେକ ବିଶ୍ୱବଦ୍ୟାଳୟରୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ ।

ଏଇଟା ଅତି ସାଧାରଣ ଅନୁଭୂତି ଯେ ଉତ୍ତପ୍ତ ବସ୍ତୁମାନ ଶକ୍ତି ବିକିରଣ କରନ୍ତି; ଅର୍ଥାତ୍ ସେମାନେ ତାପୀୟ ଶକ୍ତି ବିକିରଣ କରନ୍ତି ଏବଂ ଅନ୍ୟ ଉତ୍ସରୁ ଉକ୍ତ ବସ୍ତୁ ଉପରେ ପଡୁଥିବା କିଛି ବିକିରଣକୁ ଗ୍ରହଣ କରନ୍ତି ମଧ୍ୟ । ବୈଜ୍ଞାନିକ ମ୍ୟାକ୍ସ ପ୍ଲାଙ୍କଙ୍କର କୃଷ୍ଣବସ୍ତୁ ବିକିରଣ ନିର୍ଣ୍ଣୟ ଉପରେ ଗବେଷଣା କରି ଅଧ୍ୟାପକ ବୋଷ ଏକ ପରିସଂଖ୍ୟାନ ନିର୍ଣ୍ଣୟ କରିଥିଲେ ଯାହା କି ପରେ ବୋଷ-ଆଇନ୍‌ଷ୍ଟାଇନ୍ ପରିସଂଖ୍ୟାନ ରୂପେ ପରିଚିତ ହୋଇଥିଲା ।

କୋଲକାତା ବିଶ୍ୱବିଦ୍ୟାଳୟରେ ୧୯୧୭ରେ ବୋଷ ଓ ଶ୍ରୀ ମେଘନାଦ ଶାହା ଏକ ସମୟରେ ଅଧ୍ୟାପକ ରୂପେ ନିଯୁକ୍ତ ହୋଇଥିଲେ ଓ ମିଳିତଭାବେ ଗବେଷଣା କରିଥିଲେ ଏବଂ 'On the Influence of the Finite Volume of Molecules on the Equation of State'ନାମକ ଉଚ୍ଚ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିଥିଲେ । ପ୍ଲାଙ୍କଙ୍କ ନିୟମ ଓ ତାପୀୟ ବିକିରଣ ଉପରେ ଶ୍ରୀ ବୋଷ ଗବେଷଣାକରି ଅନେକ ବିନିଦ୍ର ରଜନୀ କଟାଇଛନ୍ତି । ସେ ଗବେଷଣା କରି ଦେଖାଇ ଦେଇଥିଲେ ଯେ ଯୌକ୍ତିକତା ଦୃଷ୍ଟିରୁ ପ୍ଲାଙ୍କଙ୍କ ନିୟମର ସମସ୍ତ ବ୍ୟୁତ୍ପତ୍ତି ଯଥେଷ୍ଟଭାବେ ଯୁକ୍ତିଯୁକ୍ତ ନୁହେଁ ।

ପରିସଂଖ୍ୟାନ ଯନ୍ତ୍ରବିଜ୍ଞାନ (Statistical mechanics)ର ନିୟମମାନଙ୍କରେ ପରିବର୍ତ୍ତନ ଆଣି ଶ୍ରୀ ବୋଷ ଦର୍ଶାଇଥିଲେ ଯେ ବୋଲଜ୍‌ମାନ ପରିସଂଖ୍ୟାନ ଓ ପରିମାଣ ପରିସଂଖ୍ୟାନ ମଧ୍ୟରେ ଅନେକ ମୂଲ୍ୟବାନ ପ୍ରଭେଦ ଅଛି ।

ଏହିପରି ଅନେକ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ କରି ସେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନଙ୍କ ଦ୍ୱାରା ଭୂରିଭୂରି ପ୍ରଶଂସିତ ହୋଇଥିଲେ । ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବହୁ ବିଜ୍ଞାନ ସଂସ୍ଥା ଶ୍ରୀ ବୋଷଙ୍କ କାର୍ଯ୍ୟକୁ ସ୍ୱୀକୃତି ଦେବା ଦ୍ୱାରା ବିଶ୍ୱ ବିଜ୍ଞାନ ମାନଚିତ୍ରରେ ଭାରତର ସ୍ଥାନ ଉନ୍ନୀତ ହୋଇଥିଲା । ଅଧ୍ୟାପକ ବୋଷ୍ ବିବାହ କରିନଥିଲେ । ସେ ଆଜୀବନ ଅବିବାହିତ ରହି ବହୁ ଗବେଷଣା କରିବାକୁ ସମର୍ଥ ହୋଇଥିଲେ ।





# ଶାନ୍ତିସ୍ୱରୂପ ଭାଟନଗର

ଡାକ୍ତର ଶ୍ରୀମତୀ ନଳିନୀ ନାୟକ

ଅସମ୍ଭବ ପ୍ରତୀୟମାନ ହେଉଥିବା ଏକ ପ୍ରକିୟାକୁ ସମ୍ଭବ କରାଇ ସେ ବୈଜ୍ଞାନିକ ମଣ୍ଡଳୀକୁ ଚମତ୍କୃତ କରିଦେଇଥିଲେ । ଚୁମ୍ବକୀୟ ଗ୍ରହଣ ଯୋଗ୍ୟତାକୁ ସଠିକ ଭାବରେ ନିର୍ଣ୍ଣୟ କରିବାରେ ବୈଜ୍ଞାନିକମାନଙ୍କର ପ୍ରୟାସ ବାରମ୍ବାର ବିଫଳତାରେ ପର୍ଯ୍ୟବସିତ ହେଉଥିଲାବେଳେ ତାଙ୍କ ଦ୍ୱାରା ନିର୍ମିତ ଚୁମ୍ବକୀୟ ବ୍ୟତିକରଣ ତୁଳାଯନ୍ତ ବା ମ୍ୟାଗନେଟିକ ଇଣ୍ଟରଫରେନ୍ସ୍ ବାଲାନ୍ସ୍ ଏହି ସମସ୍ୟାର ସମାଧାନ କରିଦେଲା ।

ବସ୍ତୁର ପ୍ରକୃତି ଆଣବିକ ଧର୍ମ ଉପରେ ଚୁମ୍ବକୀୟ ଶକ୍ତିର ପ୍ରଭାବ ସମ୍ବନ୍ଧରେ ବ୍ରିଟିଶ ବୈଜ୍ଞାନିକଗଣ ଗବେଷଣା ଚଳାଇ ଆସୁଥିଲେ । ମାଇକେଲ ଫାରାଡ଼େଙ୍କ ଦ୍ୱାରା ଉଦ୍ଭାବିତ ଚୁମ୍ବକୀୟ ତଥ୍ୟଗୁଡ଼ିକ ସମ୍ବନ୍ଧରେ ସେମାନେ ଅବଗତ ଥିଲେ ମଧ୍ୟ, ଆଣବିକ ଧର୍ମକୁ କିପରି ଚୁମ୍ବକର ପ୍ରଭାବରେ ପରିବର୍ତ୍ତିତ କରାଯାଇପାରେ ଓ ଏହି ପରିବର୍ତ୍ତନର ଧାରାକୁ କିପରି ମପାଯାଇ ପାରେ, ତାହା ନିର୍ଦ୍ଧାରଣ କରିବାରେ ସେମାନେ ବାରମ୍ବାର ଅକୃତକାର୍ଯ୍ୟ ହେଉଥିଲେ, କିନ୍ତୁ ଜଣେ ଭାରତୀୟ ବୈଜ୍ଞାନିକ ଚୁମ୍ବକୀୟ ଗ୍ରହଣ ଯୋଗ୍ୟତାକୁ ସଫଳତାର ସହିତ ନିର୍ଭୁଲ ଭାବରେ ମାପିବା ନିମନ୍ତେ ଏକ ଯନ୍ତ୍ର ଉଦ୍ଭାବନ କରି ବିଜ୍ଞାନ ଜଗତକୁ ଏକ ନୂତନ ଦିଗଦର୍ଶନ ଦେବାପାଇଁ ସକ୍ଷମ ହୋଇପାରିଥିଲେ । ତାଙ୍କର ଅବଦାନ ଫଳରେ ବସ୍ତୁର ଆଣବିକ ଗଠନ ନିର୍ଣ୍ଣୟ କରିବା ସହଜସାଧ୍ୟ ହୋଇଗଲା । ସେହି ବୈଜ୍ଞାନିକ ଜଣକ ଥିଲେ "ସାର୍ ଶାନ୍ତିସ୍ୱରୂପ ଭାଟନଗର" । ତାଙ୍କର କର୍ମନିପୁଣତା, ଅଧ୍ୟବସାୟ ଓ ବିଜ୍ଞାନ କ୍ଷେତ୍ରରେ ତାଙ୍କର ଯୁଗାନ୍ତକାରୀ ଅବଦାନ ଯୋଗୁଁହିଁ ସେ ବିଜ୍ଞାନ ଜଗତରେ ଚିରସ୍ମରଣୀୟ ହୋଇ ରହିଛନ୍ତି ।

ଶାନ୍ତିସ୍ୱରୂପ ଭାଟନଗର ୧୮୯୪ ମସିହାରେ ଅବିଭକ୍ତ ପଞ୍ଜାବ ପ୍ରଦେଶର ଭେରା ଅନ୍ତର୍ଗତ ସାହାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରଥମ ଶିକ୍ଷା ଆରମ୍ଭ ହୁଏ

"ଦୟାଲସିଂ ଉଚ୍ଚ ଇଂରେଜୀ" ବିଦ୍ୟାଳୟରେ । ଲାହୋରସ୍ଥିତ ଫରମାନ୍ ଖ୍ରୀଷ୍ଟିୟାନ କଲେଜରୁ କୃତିତ୍ୱର ସହ ବିଏସ୍.ସି ପାସକରି ୧୯୧୯ ମସିହାରେ ସେ ପଞ୍ଜାବ ବିଶ୍ୱବିଦ୍ୟାଳୟରୁ ରସାୟନ ଶାସ୍ତ୍ରରେ ସ୍ନାତକୋତ୍ତର ଡିଗ୍ରୀ ପ୍ରାପ୍ତ ହେଲେ । ଛାତ୍ର ଅବସ୍ଥାରେ ସେ ଥିଲେ ଜଣେ ଖୁବ୍ ମେଧାବୀ ଓ ପ୍ରତିଭାବାନ୍ ଛାତ୍ର । ସେ କିଛିଦିନ ବଙ୍ଗଳାର ପ୍ରସିଦ୍ଧ ବୈଜ୍ଞାନିକ ସାର୍ ଜେ.ସି. ଘୋଷଙ୍କ ଅଧୀନରେ ଅଧ୍ୟୟନ କରିଥିଲେ । ସାର୍ ଜେ. ସି. ଘୋଷ ସ୍ୱନାମଧନ୍ୟ ବୈଜ୍ଞାନିକ ସାର୍ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ଛାତ୍ର। ତେଣୁ ଶାନ୍ତିସ୍ୱରୂପ କହନ୍ତି ସେ ହେଉଛନ୍ତି ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ରଙ୍କ ଛାତ୍ରଙ୍କର ଛାତ୍ର । ଜ୍ଞାନଲିପ୍ସୁ ଭାଟନଗର ପଞ୍ଜାବ ସରକାରଙ୍କ ଦ୍ୱାରା ପ୍ରଦତ୍ତ "ଦୟାଲ ସିଂ" ବୃତ୍ତିଲାଭ କରି ରସାୟନ ଶାସ୍ତ୍ରରେ ଉଚ୍ଚତର ଗବେଷଣା କରିବାପାଇଁ ୧୯୧୯ ମସିହାରେ ଇଂଲଣ୍ଡ ଯାତ୍ରା କଲେ ।

ଡକ୍ଟର ଏଫ୍. ଜି. ଡୋନାନ୍, ଏଫ୍. ଆର୍. ଏସ୍. ସେହି ସମୟରେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ରସାୟନ ବିଭାଗର ମୁଖ୍ୟ ଅଧ୍ୟାପକ । ତାଙ୍କ ତତ୍ତ୍ୱାବଧାନରେ ଭାଟନାଗର "କଲିଳ ରସାୟନ ଶାସ୍ତ୍ର" ବା କଲଏଡ୍ କେମିଷ୍ଟ୍ରୀ ବିଷୟକ ବସ୍ତୁ ଉପରେ ଗବେଷଣା ଆରମ୍ଭ କରିଦେଲେ । "ତୁଳସୀ ଦୁଇ ପତ୍ରରୁ ବାସେ"; ତାଙ୍କର ଅଧ୍ୟବସାୟ ଓ କାର୍ଯ୍ୟନିଷ୍ଠା ଅନ୍ୟ ବୈଜ୍ଞାନିକମାନଙ୍କର ଦୃଷ୍ଟି ଆକର୍ଷଣ କଲା । ତାଙ୍କର ବ୍ୟୁତ୍ପତ୍ତିରେ ମୁଗ୍ଧ ହୋଇ ବ୍ରିଟିଶ ସରକାର ବାର୍ଷିକ ୨୫୦ ପାଉଣ୍ଡ ହାରରେ ତାଙ୍କୁ ଏକ ବୃତ୍ତି ପ୍ରଦାନ କଲେ । ତାଙ୍କର ଉତ୍ସାହ ଓ ସୃଜନୀଶକ୍ତିର ଉତ୍ତରୋତ୍ତର ବିକାଶ ଦିଗରେ ଏହି ଆର୍ଥିକ ସହାୟତା ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲା । ପରେ ପରେ ସେ ଅବଦ୍ରବ (ଇମଲସନ୍) ଓ ପାୟସୀକରଣ (ଇମଲସିଫିକେସନ୍) ପ୍ରକ୍ରିୟା ଉପରେ ଯେଉଁସବୁ ସନ୍ଦର୍ଭ ରଚନା କରିଥିଲେ ତାହା ତତ୍କାଳୀନ ବୈଜ୍ଞାନିକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ଏହି ଗବେଷଣା ଯୋଗୁଁ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ସେ ୧୯୨୧ ମସିହାରେ ରସାୟନ ଶାସ୍ତ୍ରରେ ଡି.ଏସ୍‌ସି. ଉପାଧି ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ । ଶାନ୍ତିସ୍ୱରୂପ ତାଙ୍କ ଗବେଷଣାକୁ ଖାଲି ଇଂଲଣ୍ଡର ପରୀକ୍ଷାଗାରରେ ସୀମିତ ରଖିନଥିଲେ । ଫ୍ରାନ୍ସରେ ଥିବା ସୋରବନ୍ ଗବେଷଣାଗାର ଓ ବର୍ଲିନର କାଇଜର ଉଇଲହେଲମ୍ ଗବେଷଣା ଅନୁଷ୍ଠାନରେ ଗବେଷଣା ଚଳାଇ ସେ ତାଙ୍କର ଗବେଷଣାର ଉନ୍ନତି କରାଇ ପାରିଥିଲେ ।

କିନ୍ତୁ ଭାଟନଗର ଥିଲେ ଜଣେ ଖାଣ୍ଟି ଭାରତୀୟ । ନିଜ ଦେଶରେ ବିଜ୍ଞାନର ପରିପ୍ରସାର ଓ ଅଗ୍ରଗତି କରାଇବାର ଲକ୍ଷ୍ୟ ନେଇ ସେ ଭାରତକୁ ବାହୁଡ଼ି ଆସିଲେ । ପ୍ରଥମେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ରସାୟନ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ

ରୂପେ କାର୍ଯ୍ୟଭାର ଗ୍ରହଣ କଲେ ସେ । ତାଙ୍କର ପରିଶ୍ରମ ଓ ଉଦ୍ୟୋଗ ବଳରେ ବନାରସ ବିଶ୍ୱବିଦ୍ୟାଳୟର ରସାୟନ ବିଭାଗର ବହୁବିଧ ଉନ୍ନତି ସାଧିତ ହୋଇପାରିଲା । ବହୁ ଛାତ୍ରମଧ୍ୟ ତାଙ୍କଠାରୁ ଶିକ୍ଷା ଲାଭକଲେ ଓ ତାଙ୍କ ଅଧୀନରେ ଗବେଷଣା କରି ଉପକୃତ ହୋଇପାରିଲେ । ପଞ୍ଜାବ ସରକାରଙ୍କ ବାରମ୍ବାର ଅନୁରୋଧକ୍ରମେ ସେ ପଞ୍ଜାବ ବିଶ୍ୱବିଦ୍ୟାଳୟର ନବ ନିର୍ମିତ ରାସାୟନିକ ଗବେଷଣାଗାରର ନିର୍ଦ୍ଦେଶକ ଓ ଭୌତିକ ରସାୟନ ଶାସ୍ତ୍ର ବିଭାଗର (Physical Chemistry) ମୁଖ୍ୟ ଅଧ୍ୟାପକ ଭାବରେ ୧୯୨୯ ମସିହାରେ ଦାୟିତ୍ୱ ବହନ କଲେ । ସେଠାରେ ସେ ଚୁମ୍ବକୀୟ ରସାୟନଶାସ୍ତ୍ର (Magnetic Chemistry) ଉପରେ ଗବେଷଣା ଚଳାଇଲେ । ୧୯୨୬ ରୁ ୧୯୪୦ ମସିହା ମଧ୍ୟରେ ଏ ସଂକ୍ରାନ୍ତୀୟ ଗବେଷଣା ବେଶ୍ ଅଗ୍ରଗତି କରିପାରିଥିଲା । ଏହି ସମୟ ମଧ୍ୟରେ ସେ ବହୁଛାତ୍ର ଓ ଅଧ୍ୟାପକଙ୍କୁ ଗବେଷଣା କରିବାକୁ ସୁବିଧା ଓ ସୁଯୋଗ ଦେଇଥିଲେ । ଚୁମ୍ବକର ରସାୟନ ପର୍ଯ୍ୟାୟର ପ୍ରଭାବ କିପରି ବସ୍ତୁର ଆଣବିକ ଗଠନକୁ ପ୍ରଭାବିତ କରିପାରେ ଏହି ତଥ୍ୟ ଆବିଷ୍କାର କରି ସେ ଦେଶ ବିଦେଶରେ ଅଜସ୍ର ଖ୍ୟାତି ଅର୍ଜ୍ଜନ କରିଥିଲେ । ବିଜ୍ଞାନ ଜଗତରେ ଏହି ଅବଦାନ ପାଇଁ ତାଙ୍କୁ ୧୯୪୩ ମସିହାରେ ଏଫ୍.ଆର୍.ଏସ୍. ଉପାଧିରେ ଭୂଷିତ କରାଯାଇଥିଲା । ତାଙ୍କ ଅବଦାନର ସ୍ୱୀକୃତି ସ୍ୱରୂପ ବିଟ୍ରିଶ ସରକାର ୧୯୬୩ ମସିହାରେ ତାଙ୍କୁ ଓ.ବି.ଇ. ଉପାଧି ପ୍ରଦାନ କରିଥିଲେ ।

ଡକ୍ଟର ଭାଟନଗରଙ୍କୁ ଜଣେ ବୈଜ୍ଞାନିକର ସମ୍ମାନ ଦେଇ ବିଜ୍ଞାନାଗାର ମଧ୍ୟରେ ସୀମାବଦ୍ଧ କରିଦେଲେ ତାଙ୍କର ପ୍ରକୃତ ମୂଲ୍ୟାୟନ ହୋଇପାରିବ ନାହିଁ । ଦେଶର ସ୍ୱାଧୀନତା ଲାଭପାଇଁ ମଧ୍ୟ ସେ ସର୍ବଦା ଚିନ୍ତା କରୁଥିଲେ । ସ୍ୱାଧୀନ ଭାରତର ସର୍ବାଙ୍ଗୀଣ ପ୍ରଗତି ଦିଗରେ ବିଜ୍ଞାନ କିପରି ସଫଳ ଭୂମିକା ଗ୍ରହଣ କରିପାରିବ ତା' ଥିଲା ତାଙ୍କର ମୁଖ୍ୟ ଚିନ୍ତାର ବିଷୟ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ଭାଟନଗରଙ୍କ ପରାମର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ତାଙ୍କର ଉଦ୍ୟମ ଓ ହୋମି ଜାହାଙ୍ଗିର ଭାଭାଙ୍କ ପରାମର୍ଶ କ୍ରମେ ଆମ ଦେଶରେ କେତେଗୁଡ଼ିଏ ଉଚ୍ଚ କୋଟୀର ବିଜ୍ଞାନ ଗବେଷଣାଗାରର ଭିତ୍ତି ସ୍ଥାପନ କରାଗଲା । ଶିକ୍ଷକ୍ଷେତ୍ରରେ ମଧ୍ୟ ଭାଟନଗରଙ୍କର ଦାନ ଅତୁଳନୀୟ ଥିଲା । କାଦୁଅର ଘନୀଭବନ ସମ୍ପର୍କରେ ତାଙ୍କର ପରୀକ୍ଷା, ପେଟ୍ରୋଲିୟମ ଉତ୍ପାଦନ କ୍ଷେତ୍ରରେ ଏକ ନୂତନ ଦିଗଦର୍ଶନ ଦେଖାଇଥିଲା । ଯାହା ଫଳରେ "ଷ୍ଟିଲେବ୍ରଦର୍ସ" ନାମକ କମ୍ପାନୀ ଦଶବର୍ଷ ପର୍ଯ୍ୟନ୍ତ ପଞ୍ଜାବ ବିଶ୍ୱବିଦ୍ୟାଳୟକୁ ବାର୍ଷିକ ଦେଢ଼ଲକ୍ଷ ଟଙ୍କା ହାରରେ ଅନୁଦାନ ଦେଇ ପେଟ୍ରୋଲିୟମ ଉତ୍ପାଦନ କ୍ଷେତ୍ରରେ ଉତ୍ତରୋତ୍ତର

ଗବେଷଣା ପାଇଁ ପ୍ରୋତ୍ସାହନ ଦେଉଥିଲେ । ସେହିପରି ଛୋଟ ବଡ଼ ବହୁ ଶିଳ୍ପପତି ଭାଟନଗରଙ୍କ ଦ୍ୱାରସ୍ଥ ହୋଇ ସେମାନଙ୍କର ଉତ୍ପାଦନରେ ପ୍ରୟୋଗାତ୍ମକ ପ୍ରତିବନ୍ଧକଗୁଡ଼ିକର ନିରାକରଣ ପାଇଁ ଭାଟନଗରଙ୍କ ପରାମର୍ଶ ଲୋଡୁଥିଲେ ।

ଭାଟନଗର ଯେ ବିଜ୍ଞାନୀ ହିସାବରେ ତାଙ୍କର ସମସ୍ତ ସମୟ ଅତିବାହିତ କରୁଥିଲେ ତା ନୁହେଁ । ସେ ମଧ୍ୟ ଅନେକଗୁଡ଼ିଏ ଉପାଦେୟ ପୁସ୍ତକ ରଚନା କରିଥିଲେ । ସେ ଓ ତାଙ୍କର ସହଯୋଗୀ ଶ୍ରୀ କେ. ଏମ୍. ଏନ୍. ମାଥୁର "Physical Principle and Application of Magnetic Chemistry" ଶୀର୍ଷକ ଏକ ପୁସ୍ତକ ରଚନା କରିଛନ୍ତି । ୧୯୩୩ ମସିହାରେ ତାହା ମ୍ୟାକ୍‌ମିଲାନ୍ କମ୍ପାନୀଦ୍ୱାରା ପ୍ରକାଶିତ ହୋଇଥିଲା । ଏହା ପୂର୍ବରୁ ତତ୍‌ସଂକ୍ରାନ୍ତରେ କୌଣସି ପୁସ୍ତକ ଛପାହୋଇ ନଥିଲା । ରସାୟନ କ୍ଷେତ୍ରରେ ଓ ଶିଳ୍ପ କ୍ଷେତ୍ରରେ ନିଜର ଅସାଧାରଣ ପାଣ୍ଡିତ୍ୟ ପ୍ରଦର୍ଶନ କରି ଡକ୍ଟର ଭାଟନଗର ଦେଶ ଓ ବିଦେଶରେ ବିଶେଷ ଭାବରେ ସମ୍ମାନିତ ହୋଇଛନ୍ତି । ତାଙ୍କର ଉଚ୍ଚକୋଟୀର ଗବେଷଣା, ତୀକ୍ଷ୍ଣ ଦୂରଦୃଷ୍ଟି ଓ ଗଭୀର ଦେଶପ୍ରୀତି ଯୋଗୁଁ ସେ ଦେଶ ଭିତରେ ଓ ଦେଶ ବାହାରେ ବହୁ ସମ୍ମାନ ସୁଚକ ଉପାଧି ପାଇବାକୁ ସକ୍ଷମ ହୋଇଥିଲେ । ବିହାର, ଆଲ୍ଲାହାବାଦ୍ ଓ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଭାଟନଗରଙ୍କୁ ସମ୍ମାନ ସୂଚକ ଡି.ଏସ୍‌ସି. ଡିଗ୍ରୀ ପ୍ରଦାନ କରିଥିଲେ । ୧୯୨୮ ରୁ ୧୯୩୮ ମସିହା ପର୍ଯ୍ୟନ୍ତ ସେ ଭାରତୀୟ ବିଜ୍ଞାନ କଂଗ୍ରେସର ରସାୟନ ବିଭାଗର ସଭାପତି ତଥା କର୍ମକର୍ତ୍ତା ଭାବରେ ମନୋନୀତ ହୋଇଥିଲେ । ୧୯୪୫ ମସିହାରେ ବିଜ୍ଞାନ କଂଗ୍ରେସର ସାମ୍ବତ୍ସରିକ ଉତ୍ସବରେ ସଭାପତି ପଦ ଅଳଂକୃତ କରିବାର ସୁଯୋଗ ଲାଭ କରିଥିଲେ ସେ । ଭାଟନଗର ବିଦେଶର ବୈଜ୍ଞାନିକ ସମାରୋହଗୁଡ଼ିକରେ ବହୁବାର ଭାରତ ପକ୍ଷରୁ ପ୍ରତିନିଧିତ୍ୱ କରିଥିଲେ । ତାଙ୍କର କାର୍ଯ୍ୟକାଳ ମଧ୍ୟରେ ସେ ଭାରତ ସରକାରଙ୍କ ଶିଳ୍ପ ଓ ବୈଜ୍ଞାନିକ ବିଭାଗର ସଚିବ ରୂପେ ଦାୟିତ୍ୱ ବହନ କରି ଦେଶର ବହୁ ଶିଳ୍ପ ଯୋଜନାକୁ ପ୍ରତ୍ୟକ୍ଷ ଭାବରେ କାର୍ଯ୍ୟକାରୀ କରାଇଥିଲେ । ଭାଟନଗର ବହୁ ଶିଳ୍ପ ପ୍ରତିଷ୍ଠାନରେ ପରାମର୍ଶଦାତା ରୂପେ ସୁଚିନ୍ତିତ ପରାମର୍ଶ ଦେଇ ଆମ ଦେଶରେ ଶିଳ୍ପର ବିକାଶ ତ୍ୱରାନିତ କରାଇବାରେ ସଫଳ କାମ ହୋଇଥିଲେ । ତାଙ୍କ ପରିଚାଳନାରେ ଆମଦେଶରେ ବହୁ ଜାତୀୟ ବିଜ୍ଞାନାଗାର ପ୍ରତିଷ୍ଠିତ ହୋଇଥିଲା ।

"କର୍ପୂର ଉଡ଼ିଯାଇଛି ହେଲେ କନା ପଡ଼ିରହିଛି ।" ଜୀବନ କ୍ଷଣଭଙ୍ଗୁର । ଭାଟନଗର ଆଉ ଇହଜଗତରେ ନାହାନ୍ତି ସତ, କିନ୍ତୁ ଦେଶ ଓ ସମାଜପ୍ରତି ତାଙ୍କର ମହାନ୍ ଅବଦାନ ଯୋଗୁଁ ଓ ଦେଶର ଶିଳ୍ପକ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିପାରିଥିବା

ଯୋଗୁଁ ସେ ଅମର ହୋଇରହିଛନ୍ତି । ଭାଟନଗରଙ୍କ ଅବଦାନକୁ ସ୍ମରଣ ରଖିବା ପାଇଁ ଭାରତ ସରକାର ୧୯୫୭ ମସିହାରେ 'ଭାଟନଗର ମେମୋରିଆଲ ଆୱାର୍ଡ଼' ନାମକ ଏକ ଜାତୀୟ ପୁରସ୍କାରର ବ୍ୟବସ୍ଥା କରିଛନ୍ତି । ଏହା ଭାରତ ସରକାରଙ୍କର ବିଜ୍ଞାନ ଓ ଗବେଷଣା ଅନୁଷ୍ଠାନର ଆନୁକୂଲ୍ୟରେ କାର୍ଯ୍ୟକାରୀ କରାଯାଇଥାଏ । ଏହାଦ୍ୱାରା ପ୍ରତିବର୍ଷ ବହୁ ଯୁବ ପଦାର୍ଥବିଜ୍ଞାନୀ, ରସାୟନବିତ୍, ଗଣିତଜ୍ଞ, ଜୀବବିଜ୍ଞାନୀ ଓ ଯନ୍ତ୍ରୀ ଏହି ପୁରସ୍କାର ପାଇବାକୁ ସକ୍ଷମ ହୋଇଥାନ୍ତି । ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ପଦାର୍ଥ ବିଜ୍ଞାନୀ ସ୍ୱର୍ଗତ ଡକ୍ଟର କେ. ଏସ୍. କ୍ରିଷ୍ଣନ୍ ଏହି ପୁରସ୍କାର ପାଇବାରେ ସର୍ବପ୍ରଥମ ବ୍ୟକ୍ତି । ଭାଟନଗରଙ୍କୁ ମଧ୍ୟ 'ପଦ୍ମବିଭୂଷଣ' ସମ୍ମାନ ପ୍ରଦାନ କରାଯାଇଛି । ୧୯୫୫ ମସିହା ଜାନୁଆରୀ ମାସ ୧ ତାରିଖରେ ଭାଟନାଗର ଇହଲୀଳା ସମ୍ବରଣ କରିଥିଲେ । ଶାନ୍ତିସ୍ୱରୂପ ଭାଟନଗର ଆଉ ଇହଜଗତରେ ନାହାଁନ୍ତି ସତ, କିନ୍ତୁ ବିଜ୍ଞାନକୁ ତାଙ୍କର ଅନବଦ୍ୟ ଅବଦାନ ଯୋଗୁ ତାଙ୍କ ନାମ ବିଜ୍ଞାନ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।





# ଭି.ଆର. ଖାନୋଲକର

**ଡାକ୍ତର ନିମାଇଁ ଚରଣ ପରିଜା**

ଡାକ୍ତର ଖାନୋଲକର ଭାରତୀୟ ଭେଷଜ ବିଜ୍ଞାନ ବିଭାଗରେ ଏକ ଜଣାଶୁଣା ବ୍ୟକ୍ତିତ୍ୱ । ତାଙ୍କୁ ଭାରତୀୟ "ବିଜ୍ଞାନ ତତ୍ତ୍ୱ ଓ ଗବେଷଣାର ଜନକ" ବୋଲି ଆଖ୍ୟା ଦିଆଯାଇଥାଏ । ଡାକ୍ତର ଖାନୋଲକର ଏପ୍ରିଲ ୧୩ ତାରିଖ ୧୮୯୫ରେ ମହାରାଷ୍ଟ୍ରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂରା ନାମ ହେଉଛି ବସନ୍ତ ରାମଜୀ ଖାନୋଲକର । ୧୯୨୩ ମସିହାରେ ଲଣ୍ଡନ ୟୁନିଭରସିଟିରୁ ଏମ୍.ବି.ବି.ଏସ୍. ପାଶ କରିଥିଲେ ଓ ସେହିଠାରେ ନିଦାନ ତତ୍ତ୍ୱ ଉପରେ ସ୍ନାତକୋତ୍ତର ଏମ୍.ଡ଼ି. ଡିଗ୍ରୀ ହାସଲ କରିଥିଲେ । ସେ ହେଉଛନ୍ତି ନିଦାନ ତତ୍ତ୍ୱ ବିଭାଗର ଏମ୍.ଡ଼ି. ଡିଗ୍ରୀ ହାସଲ କରିବାରେ ପ୍ରଥମ ଭାରତୀୟ ଡାକ୍ତର । କିଛିଦିନ ଲଣ୍ଡନରେ ଅବସ୍ଥାନ କଲାପରେ ସେ ମୁମ୍ବାଇସ୍ଥିତ ଗ୍ରାଣ୍ଟ ମେଡ଼ିକାଲ ଓ ଶେଠ ଜି.ଏସ୍ ମେଡ଼ିକାଲ କଲେଜରେ ଅଧ୍ୟାପକ ଭାବରେ ଯୋଗଦାନ କରିଥିଲେ । ଅଗଣିତ ମେଡ଼ିକାଲ ଛାତ୍ରଙ୍କୁ ଶିକ୍ଷାଦେବା ସଙ୍ଗେ ସଙ୍ଗେ ସେ ଗବେଷଣାରେ ମନୋନିବେଶ କରିଥିଲେ । ତାଙ୍କର ନିରବଚ୍ଛିନ୍ନ ଗବେଷଣାର ସୁଫଳ ଆଜି ଭେଷଜ ବିଜ୍ଞାନ କ୍ଷେତ୍ରରେ ଅନେକ ଅନୁସନ୍ଧିତ୍ସୁ ଛାତ୍ରଛାତ୍ରୀ ଓ ଗବେଷକଙ୍କୁ ପାଥେୟ ଯୋଗାଇଆସିଛି ।

ତାଙ୍କର ଅନେକ ଗବେଷଣା ଭିତରୁ କ୍ୟାନସର ରୋଗର କାରଣ ଓ ତାହାର ସଂକ୍ରମଣ ଅନୁଶୀଳନ, ରକ୍ତର ବିଭାଗୀକରଣ ଓ ଲେପ୍ରୋସୀ ବା କୁଷ୍ଠରୋଗ ଉପରେ କରିଥିବା ଗବେଷଣାମାନ ବେଶ୍ ଉଲ୍ଲେଖଯୋଗ୍ୟ ଅଟେ । କ୍ୟାନସର ଟବୋକା ବା ତମାଖୁ ଜନିତ ବୋଲି ସେ ଗବେଷଣା କରି ପ୍ରମାଣ କରିଦେଇଥିଲେ । ତମାଖୁରେ ଥିବା ସାଇଟୋଷ୍ଟେରିଲ ଗ୍ଲାଇକୋସାଇଡ୍ ଯେ କ୍ୟାନସର ସୃଷ୍ଟିକାରୀ ରାସାୟନିକ ଦ୍ରବ୍ୟ, ଏହା ସେ ପ୍ରମାଣ କରି ଦେଖାଇଦେଇଥିଲେ । ସେ ହେଉଛନ୍ତି ପ୍ରଥମ ଡାକ୍ତର ଯିଏକି 'ଧୋତି କ୍ୟାନସର' ଆବିଷ୍କାର କରିଥିଲେ । ଅଣ୍ଟାରେ ଭିଡ଼ା ହେଉଥିବା ଧୋତି ଯେ କ୍ୟାନସର୍

କରିପାରେ ତାହା ଆଗରୁ ଜଣାନଥିଲା । ସେ ଏହା ଗବେଷଣା କରି ଦେଖାଇଥିଲେ । ଭାରତୀୟମାନଙ୍କର ରକ୍ତର ବିଭାଗୀକରଣ ଓ ଆର.ଏଚ. ଫ୍ୟାକ୍ଟରର (Rh-factor) ପ୍ରସାରଣ ଉପରେ ସେ ଆଲୋକପାତ କରିଥିଲେ । କୁଷ୍ଠ ରୋଗର ଜୀବାଣୁ ଚିହ୍ନଟ ପଦ୍ଧତିର ଆବିଷ୍କାର କରି କୁଷ୍ଠରୋଗ ଚିକିତ୍ସା କ୍ଷେତ୍ରରେ ନୂତନ ଦିଗଦର୍ଶନ ଦେଇଥିଲେ । ଏହା ବ୍ୟତୀତ ସେ ହେଉଛନ୍ତି ପ୍ରଥମ ଭାରତୀୟ ଡାକ୍ତର ଯିଏକି ସୂକ୍ଷ୍ମ ଛୁଞ୍ଚିମୁନ ଜରିଆରେ କ୍ୟାନସର ଚିହ୍ନଟ ପଦ୍ଧତି ବିଷୟରେ ଅବଗତ କରାଇଥିଲେ । ଭାରତୀୟ ଜନମାନସରେ ଅନେକ ପ୍ରଥା ଓ ଅଭ୍ୟାସ କିପରି କ୍ୟାନସରର କାରଣ ହୋଇଥାଏ ତାହା ସେ ଗବେଷଣା ଓ ଅନୁସନ୍ଧାନ କରି ବାହାର କରିଥିଲେ । ଉଦାହରଣ ସ୍ୱରୂପ, କଡ଼ାପାନ ଖାଇବା ଦ୍ୱାରା ମୁଖଗହ୍ୱର କ୍ୟାନସର ଓ ଧୂମପାନ ଦ୍ୱାରା ଫୁସ୍‌ଫୁସ୍ କ୍ୟାନସର ହେଉଥିବାର ପୁଙ୍ଖାନୁପୁଙ୍ଖ ଗବେଷଣା କରି ଦେଖାଇଥିଲେ । ପ୍ରଥା ଅନୁସାରେ ହିନ୍ଦୁମାନଙ୍କର ଯୌନାଙ୍ଗ କ୍ୟାନସର ଅଧିକ ହୋଇଥାଏ । ଫଳରେ ହିନ୍ଦୁ ମହିଳାମାନଙ୍କର ଜରାୟୁ ମୁଖ କ୍ୟାନସରର ଏହା କାରଣ ବୋଲି ମଧ୍ୟ କୁହାଯାଏ । ସେହିପରି କଙ୍ଗ୍ରୀ କ୍ୟାନସର ମଧ୍ୟ ହିମାଳୟର ପାଦଦେଶରେ ବସବାସ କରୁଥିବା ଲୋକଙ୍କ ପେଟ, କାନ୍ଧ ଓ ପିଠିରେ ଦେଖାଯାଇଥାଏ । ସେମାନେ ଶୀତରୁ ରକ୍ଷା ପାଇବା ପାଇଁ ଗୋଟେ ବାକ୍ସରେ ନିଆଁ ରଖି ବାନ୍ଧିଦେଇଥାନ୍ତି । ଏହାରି ଫଳରେ ବାରମ୍ବାର ଚର୍ମ ଉତ୍ତେଜିତ ହୋଇ କ୍ୟାନସର ହୋଇଥାଏ ।

ଡାକ୍ତର ଖାନୋଲକର ଜଣେ ଉଚ୍ଚକୋଟୀର ଶିକ୍ଷକ ଥିଲେ । ତାଙ୍କ ଶିକ୍ଷାପ୍ରଣାଳୀରେ ସେ ଅଗଣିତ ଛାତ୍ରଛାତ୍ରୀଙ୍କୁ ଅଭିଭୂତ କରିଦେଉଥିଲେ । ସେ ବହୁ ଜାତୀୟ ଓ ଅନ୍ତର୍ଜାତୀୟ ଶିକ୍ଷାସଂଗଠନ ସହିତ ଓତପ୍ରୋତ ଭାବରେ ଜଡ଼ିତ ଥିଲେ । ସେ ବହୁ ପୁସ୍ତକ ସଂକଳନ ଓ ସଂଗ୍ରାହକ ଭାବରେ କାର୍ଯ୍ୟ କରିଯାଇଛନ୍ତି । ତାଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ସନ୍ଦର୍ଭର ଲେଖା ଓ ପ୍ରଣାଳୀ ବେଶ ଉଚ୍ଚମାନର, ସାବଲୀଳ ଓ ପ୍ରାମାଣିକ ହୋଇଥାଏ । ଡାକ୍ତରୀ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ସେ ଅନେକ ବିଖ୍ୟାତ ଡାକ୍ତର ଓ ଗବେଷକଙ୍କର ରୋଲ ମଡ଼େଲ ବା ଦୃଷ୍ଟାନ୍ତ ଭାବରେ ରହିଆସିଛନ୍ତି । କ୍ୟାନସର ଗବେଷଣାର ସଫଳତା ପାଇଁ ସେ ଅନ୍ତର୍ଜାତୀୟ କ୍ୟାନସର ଗବେଷଣା କମିଶନର ସଭାପତି ରହିଥିଲେ ଓ ଏହି ପଦବୀରେ ସେ ୧୯୫୦ ରୁ ୧୯୫୪ ପର୍ଯ୍ୟନ୍ତ ଅବସ୍ଥାପିତ ହୋଇଥିଲେ । ଏହା ସହିତ ସେ କ୍ୟାନସର ବିରୋଧରେ କାର୍ଯ୍ୟ କରୁଥିବା ଏକ ଆନ୍ତର୍ଜାତିକ କ୍ୟାନସର ସଂଗଠନର ମଧ୍ୟ ସଭାପତି ଥିଲେ । ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର କୁଷ୍ଠ ଓ କ୍ୟାନସର ସମ୍ବନ୍ଧୀୟ ସଂଗଠନର ସେ ସଭ୍ୟ ଭାବରେ ରହିଆସିଥିଲେ ଓ ଜାତିସଂଘର ଆଟୋମିକ ରେଡ଼ିଏସନ ବୈଜ୍ଞାନିକ କମିଟିର ସଭ୍ୟ

ଭାବରେ ଅବସ୍ଥାପିତ ଥିଲେ । ଏହା ବ୍ୟତୀତ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ମେଡ଼ିକାଲ ଆଡ଼ଭାଇଜରି କମିଟିର ସଦସ୍ୟ ଭାବରେ ବହୁଦିନ ଧରି ରହିଆସିଥିଲେ ।

ଡାକ୍ତର ଖାନୋଲକର ମୁମ୍ବାଇସ୍ଥିତ ଟାଟା ମେମୋରିଆଲ ହସପିଟାଲ ସହିତ ଜଡ଼ିତ ଥିଲେ । ସେ ଏହି ସଂସ୍ଥାର ଲାବୋରେଟୋରୀ ଓ ଗବେଷଣା ବିଭାଗର ନିର୍ଦ୍ଦେଶକ ଭାବରେ ଦୀର୍ଘଦିନ ଧରି କାର୍ଯ୍ୟକରି ଆସୁଥିଲେ । ଏହା ବ୍ୟତୀତ ଏହି ସଂସ୍ଥାର ବିଜ୍ଞାନ ଓ ଶିଳ୍ପଗବେଷଣା କାଉନସିଲର ଗଭର୍ଣ୍ଣିଂ ବଡ଼ି ମେମ୍ବର ଭାବରେ ବହୁତ ଦିନଧରି ଅବସ୍ଥାପିତ ହୋଇଥିଲେ । ଡାକ୍ତର ଖାନୋଲକରଙ୍କର ଯୋଗ୍ୟତା, ଗବେଷଣା ଓ ସଫଳତା ଦୃଷ୍ଟିରୁ ତାଙ୍କୁ ବମ୍ବେ ୟୁନିଭରସିଟିର ଭାଇସ ଚାନସେଲର ଭାବେ ନିଯୁକ୍ତି ଦିଆଯାଇଥିଲା । ସେହି ମର୍ଯ୍ୟାଦାଜନକ ପଦବୀରେ ସେ ୧୯୬୦ ରୁ ୧୯୬୩ ପର୍ଯ୍ୟନ୍ତ ରହିଥିଲେ । ସେହି ସମୟରେ ଭାରତ ସରକାର ତାଙ୍କର କୃତିତ୍ୱ ପାଇଁ ବିଜ୍ଞାନର ଜାତୀୟ ପ୍ରଫେସର ଭାବରେ ତାଙ୍କୁ ନିଯୁକ୍ତି ଦେଇଥିଲେ । ଏହି ପଦବୀରେ ସେ ୧୦ ବର୍ଷ ପର୍ଯ୍ୟନ୍ତ ରହିଥିଲେ ଓ କ୍ୟାନସର ଓ କୁଷ୍ଠରୋଗ ଉପରେ ଅନେକ ଗବେଷଣା କରି ନୂତନ ତଥ୍ୟ ଆବିଷ୍କାର କରିଥିଲେ । ସେ ଭାରତୀୟ କ୍ୟାନସର ଗବେଷଣା କେନ୍ଦ୍ରର ଗଠନ କରିଥିଲେ ଓ ସେହି ସଂସ୍ଥାର ନିର୍ଦ୍ଦେଶକ ଭାବରେ ୧୯୭୩ ମସିହା ପର୍ଯ୍ୟନ୍ତ ରହିଥିଲେ । ସେ ମଧ୍ୟ ଭାରତୀୟ ଆଟମିକ ଏନର୍ଜି ଡିପାର୍ଟମେଣ୍ଟର ସଦସ୍ୟ ଭାବରେ କାର୍ଯ୍ୟନିର୍ବାହ କରିଥିଲେ । ଏହି ସଂସ୍ଥାରେ ଥିବାବେଳେ ସେ ଭେଷଜ ଓ ପ୍ରାଣିବିଜ୍ଞାନ କମିଟିର ଉପଦେଷ୍ଟା ଭାବରେ ୧୯୫୫ ରୁ ୧୯୬୦ ପର୍ଯ୍ୟନ୍ତ ରହିଥିଲେ ।

ତାଙ୍କର କୃତିତ୍ୱ ପାଇଁ ଭାରତ ସରକାର ୧୯୫୫ ରେ ତାଙ୍କୁ 'ପଦ୍ମଭୂଷଣ' ସମ୍ମାନରେ ଅଭିଷିକ୍ତ କରିଥିଲେ । ଭାରତର ଭେଷଜ ତତ୍ତ୍ୱ ଉପରେ ତାଙ୍କର ଗବେଷଣା ଓ ଶିକ୍ଷା ମାନବ କଲ୍ୟାଣରେ ବିନିଯୋଗ ହୋଇପାରିଥିବାରୁ ତାଙ୍କୁ ଏପରି ଉପାଧି ପ୍ରଦାନ କରାଯାଇଥିଲା । ଡାକ୍ତର ଖାନୋଲକର ସର୍ବଭାରତୀୟ ପାଥୋଲଜି ଓ ମାଇକ୍ରୋବାୟୋଲୋଜି ପ୍ରତିଷ୍ଠାନର ପ୍ରତିଷ୍ଠାତା ଥିଲେ ଓ ଏହାର ପ୍ରଥମ ସଭାପତି ଥିଲେ । ସେ ଜଣେ କୃତବିଦ୍ୟ ଡାକ୍ତର, ଗବେଷକ, ଶିକ୍ଷକ ଓ ସଂଗଠକ । କ୍ୟାନସର ଓ କୁଷ୍ଠରୋଗ ଭଳି ଦୁରାରୋଗ୍ୟର ନିରାକରଣ ପାଇଁ ସେ ଅନେକ କାର୍ଯ୍ୟ କରିଯାଇଛନ୍ତି । ସେ ୧୦୦ରୁ ଊର୍ଦ୍ଧ୍ୱ ସଂଖ୍ୟକ ତଥ୍ୟଭିତ୍ତିକ ସନ୍ଦର୍ଭ ଲେଖିଛନ୍ତି, କ୍ୟାନସର ଓ କୁଷ୍ଠରୋଗ ଉପରେ ୩ ଖଣ୍ଡ ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି ଓ ଅନେକ ସେମିନାର, ସମ୍ମାନ, ଅତିଥି ବକ୍ତୃତା ପ୍ରଦାନ କରି ଭେଷଜ ବିଜ୍ଞାନରେ ନିଦାନ ତତ୍ତ୍ୱ ଓ ଗବେଷଣାର ଭୂମିକାକୁ ତ୍ୱରାନ୍ୱିତ କରିଯାଇଛନ୍ତି ।

ତାଙ୍କୁ 'ନିଦାନତତ୍ତ୍ୱ ବିଜ୍ଞାନର ଜନକ' ବୋଲି ଯଥାର୍ଥରେ କୁହାଯାଏ । ସେ ୧୯୭୮ ମସିହା ଅକ୍ଟୋବର ୨୯ ତାରିଖରେ ମୃତ୍ୟୁବରଣ କରିଥିଲେ । ମୃତ୍ୟୁବେଳକୁ ତାଙ୍କର ପତ୍ନୀ ଓ ଏକମାତ୍ର କନ୍ୟା ପାଖରେ ଥିଲେ । ଡାକ୍ତର ଖାନୋଲକର ଭାରତର ଭେଷଜ ଓ ନିଦାନ ତତ୍ତ୍ୱ ବିଭାଗର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭାବରେ ପ୍ରତିଭାତ ହୋଇଥାନ୍ତି । ତାଙ୍କ ଉଦ୍ଦେଶ୍ୟରେ ସର୍ବଭାରତୀୟ ପାଥୋଲୋଜି ଓ ମାଇକ୍ରୋବାୟୋଲୋଜି ଆସୋସିଏସନ ତରଫରୁ ଏକ ସମ୍ମାନଜନକ ପୁରସ୍କାର ଦିଆଯାଇଥାଏ । ପ୍ରତିବର୍ଷ ପ୍ରକାଶିତ ସର୍ବଶ୍ରେଷ୍ଠ ଗବେଷଣାମୂଳକ ସନ୍ଦର୍ଭ ପାଇଁ ଜଣକୁ ଏହାର ବାର୍ଷିକ ସମ୍ମିଳନୀରେ ସମ୍ମାନିତ କରାଯାଇଥାଏ । ଏହା ମାଧ୍ୟମରେ ନିଦାନତତ୍ତ୍ୱବିତ୍‌ମାନେ ଡାକ୍ତର ବୈଜ୍ଞାନିକ ଖାଲୋଲକରଙ୍କ ସ୍ମୃତିଚାରଣ କରିବା ସଙ୍ଗେ ସଙ୍ଗେ ତାଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥାନ୍ତି । ଜଣେ ଉଚ୍ଚକୋଟୀର ଡାକ୍ତର, ଗବେଷକ ଓ ଶିକ୍ଷକ ଭାବରେ ସେ ଅନେକ ଛାତ୍ର ସୃଷ୍ଟି କରିଯାଇଛନ୍ତି ଓ ଆହୁରି ଅନେକେ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ କାର୍ଯ୍ୟ କରି ଚାଲିଛନ୍ତି ।





# ୟେଲ୍ଲାପ୍ରଗଡ଼ ସୁବ୍ବା ରୋ'

## ପ୍ରଫେସର ଡାକ୍ତର ବାସୁଦେବ କର

ଭାରତର ବରପୁତ୍ର ଡାକ୍ତର ୟେଲ୍ଲାପ୍ରଗଡ଼ ସୁବ୍ବା ରୋ'ଙ୍କ ବିଷୟରେ କିଛି ଚିକିତ୍ସା ବିଜ୍ଞାନୀଙ୍କୁ ଛାଡ଼ି ଅନ୍ୟମାନେ ବିଶେଷ କିଛି ଜାଣିଥିବା ପରି ମନେହୁଏ ନାହିଁ । କାରଣ ତାଙ୍କ କୀର୍ତ୍ତି ଓ କୃତିର ଫଳଶ୍ରୁତି ଆମ ସମସ୍ତଙ୍କ ଦୈନନ୍ଦିନ ଜୀବନକୁ ଊଣା ଅଧିକେ ଏତେ ବେଶୀ ପ୍ରଭାବିତ କରି ରଖିଛି ଯେ, ସୃଷ୍ଟିର ଅବଦାନକୁ ଉପଭୋଗ କରୁଥିଲାବେଳେ ସ୍ରଷ୍ଟାଙ୍କୁ ଯେପରି ସମସ୍ତେ ଭୁଲି ଯାଇଥାଆନ୍ତି, ସୁବ୍ବା ରୋ'ଙ୍କ କ୍ଷେତ୍ରରେ ଠିକ୍ ତାହା ହିଁ ଘଟିଛି । ତାଙ୍କର ଅବଦାନ ଯୋଗୁ ସାରା ବିଶ୍ୱରେ କୋଟି କୋଟି ଲୋକ ସୁସ୍ଥ ଜୀବନଯାପନ କରିପାରୁଥିବା ସତ୍ତ୍ୱେ କର୍ତ୍ତାଙ୍କୁ ସ୍ମରଣ କରିବାକୁ କେହି କେବେ ଚିନ୍ତା କରନ୍ତି ନାହିଁ । ୧୯୪୮ ମସିହାରେ ସୁବ୍ବା ରୋ'ଙ୍କ ଦେହାନ୍ତ ପରେ ତାଙ୍କ ସ୍ମୃତିଚାରଣ କରି ଜଣେ ଆମେରିକୀୟ ବିଜ୍ଞାନୀ ଏହି ବରେଣ୍ୟ ଭାରତୀୟ ବିଜ୍ଞାନୀଙ୍କ ବିଷୟରେ ଆମ ଦେଶବାସୀଙ୍କୁ ପରୋକ୍ଷ ଇଙ୍ଗିତ କରି କହିଛନ୍ତି : 'ତୁମେମାନେ ତାଙ୍କୁ ଚିହ୍ନିପାରିଲ ନାହିଁ... କିନ୍ତୁ ମନେ ରଖ, ସେ ଥିଲେବୋଲି ତୁମେ ଆଜି ସୁସ୍ଥ ଭାବରେ ବଞ୍ଚିବାର ସୁଯୋଗ ପାଉଛ, ଅଧିକ କାଳ ବି ବଞ୍ଚି ପାରୁଛ... ।'

ଡକ୍ଟର ସୁବ୍ବା ରୋ' ଥିଲେ ଜଣେ ସ୍ୱପ୍ନ ସୌଦାଗର ଭେଷଜ ବିଜ୍ଞାନୀ । ମଣିଷଙ୍କୁ ନାନାବିଧ ରୋଗବ୍ୟାଧି କବଳରୁ ରକ୍ଷା କରିବା ପାଇଁ ନୂଆ ନୂଆ ଔଷଧ ଉଦ୍ଭାବନ କରିବାର ନିଶା ତାଙ୍କୁ ଆମରଣ ତତ୍ପର କରି ରଖିଥିଲା । ୫୩ ବର୍ଷର ସୀମିତ ଆୟୁକାଳ ମଧ୍ୟରୁ ପ୍ରାୟ ଅର୍ଦ୍ଧାଧିକ ସମୟ ତାଙ୍କର କଟିଥିଲା ଆମେରିକାର ବିଭିନ୍ନ ଗବେଷଣାଗାରରେ... ଚମକପ୍ରଦ ଔଷଧମାନଙ୍କ ଉଦ୍ଭାବନ, ଅନୁଶୀଳନ, ପ୍ରସ୍ତୁତି ଓ ପ୍ରାୟୋଗିକ ପରୀକ୍ଷଣପରି କାର୍ଯ୍ୟରେ । ମୃତ୍ୟୁର ଗୋଟିଏ ସପ୍ତାହ ପୂର୍ବରୁ ସେ ତାଙ୍କର ଜଣେ ଅନ୍ତରଙ୍ଗ ସହକର୍ମୀଙ୍କୁ କହିଥିଲେ - 'ଭଗବାନ୍ ଯଦି ମୋତେ ଆଉ ୧୦ ବର୍ଷ ବଞ୍ଚିବାର ସୁଯୋଗ ଦେବେ,

ହୁଏତ ମୁଁ ଆହୁରି ୧୦ଟି ନୂଆ ରୋଗ ପାଇଁ ଫଳପ୍ରଦ ଔଷଧ ବାହାର କରିପାରିବି ବୋଲି ଆଶା ରଖିଛି ।' 'ପ୍ରଚାର କମ୍' ଓ 'କାମ ଅଧିକ କରିଯିବା' (ଯାହାକୁ ଇଂରାଜୀରେ Low profile and high performance ବୋଲି କୁହାଯାଏ) ତାଙ୍କର ଧ୍ୟେୟ ଥିଲା । ତେଣୁ ବିଭିନ୍ନ ବୈଜ୍ଞାନିକ ସମ୍ମାନ, ସମ୍ମିଳନୀ, ସଭାସମିତି ଓ ବକ୍ତୃତା ମଞ୍ଚମାନଙ୍କରେ ଯୋଗ ଦେଇ ସମୟ ଅପଚୟ ଏବଂ ନିଜର ପ୍ରଚାର ଓ ପ୍ରଶସ୍ତି ଗାନ କରିବାକୁ ସେ ପସନ୍ଦ କରୁନଥିଲେ । ଫଳରେ ତତ୍କାଳୀନ ବିଜ୍ଞାନ ଦୁନିଆରେ ତାଙ୍କର ପରିଚିତି, ପ୍ରସିଦ୍ଧି ଓ ଖ୍ୟାତି ଅନ୍ୟ ସହକର୍ମୀଙ୍କ ତୁଳନାରେ ଯଥୋଚିତ ଆନ୍ତର୍ଜାତିକ ଦୃଷ୍ଟି ଆକର୍ଷଣ କରିପାରି ନଥିଲା ।

ସୁବ୍ବା ରୋ'ଙ୍କ ନାତିଦୀର୍ଘ ଜୀବନଯାତ୍ରା ନାନା ଦୁଃଖକଷ୍ଟର ଆବର୍ତ୍ତ ଦେଇ ଗତିକରିଥିଲା । ଆନ୍ଧ୍ରପ୍ରଦେଶର ଗୋଦାବରୀ ଜିଲ୍ଲା ଅଧୀନସ୍ଥ 'ଭୀମାବରମ୍' ନାମକ ଏକ ଗ୍ରାମରେ ୧୮୯୫ ମସିହା ଜାନୁଆରୀ ୧୨ ତାରିଖରେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ବହୁ ଆର୍ଥିକ ବାଧାବିଘ୍ନ ଓ ପ୍ରତିକୂଳ ଅବସ୍ଥା ମଧ୍ୟରେ ତାଙ୍କର ପ୍ରାଥମିକ ଓ ନିମ୍ନମାଧ୍ୟମିକ ଶିକ୍ଷା କୌଣସି ମତେ ସମାପ୍ତ ହୋଇଥିଲା ରାଜମହେନ୍ଦ୍ରିରେ । ବିଭିନ୍ନ ବଦାନ୍ୟ ବ୍ୟକ୍ତି ଓ ସାମାଜିକ ସଂସ୍ଥାର ସାହାଯ୍ୟକ୍ରମେ ମାଡ୍ରାସ ନଗରୀସ୍ଥ ହିନ୍ଦୁ ହାଇସ୍କୁଲ୍‌ରୁ ଯଥେକଥେ ମ୍ୟାଟ୍ରିକ୍ ପାସ୍ କରିଥିଲେ ସେ, ତିନିଥର ପରୀକ୍ଷା ଦେଲାପରେ । ତା'ପରେ ସେଠାକାର ପ୍ରେସିଡ଼େନ୍‌ସି କଲେଜରୁ ଇଣ୍ଟର୍‌ମିଡ଼ିଏଟ୍ ଶିକ୍ଷା ସାରି ସେ ତାଙ୍କ ଭାବୀ ଶ୍ୱଶୁର 'କସ୍ତୁରୀ ସୂର୍ଯ୍ୟନାରାୟଣ ମୂର୍ତ୍ତି'ଙ୍କ ଆର୍ଥିକ ସାହାଯ୍ୟ ସହଯୋଗକ୍ରମେ ମାଡ୍ରାସ୍ ମେଡ଼ିକାଲ୍ କଲେଜରେ ନାମ ଲେଖାଇଲେ । ଡାକ୍ତରି ଛାତ୍ର ଥିଲାବେଳେ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ପାରମ୍ପରିକ ବିଲାତି ପୋଷାକ ନ ପିନ୍ଧି ଖଦି ପରିଧାନ କରୁଥିବାରୁ ସେ ବେଳର ବିଲାତି ସର୍ଜରି ପ୍ରଫେସର୍ 'ମିଷ୍ଟର୍ ଏମ୍.ସି. ବ୍ରାଡ୍‌ଫିଲ୍ଡ଼'ଙ୍କ କୋପଦୃଷ୍ଟିରେ ପଡ଼ିଥିଲେ । ଫଳରେ ମେଡ଼ିକାଲ୍ ଶେଷପରୀକ୍ଷାରେ ତାଙ୍କ ଲିଖିତ ଉତ୍ତର ଖୁବ୍ ଭଲ ଥାଇବି ମୌଖିକ ପରୀକ୍ଷାରେ ତାଙ୍କୁ ଜାଣି ଜାଣି କମ୍ ନମ୍ବର ଦିଆ ଯାଇଥିଲା, ଯାହା ଯୋଗୁଁ ତାଙ୍କୁ ଏମ୍.ବି.ବି.ଏସ୍. ସାର୍ଟିଫିକେଟ୍ ପରିବର୍ତ୍ତେ ବିଶ୍ୱବିଦ୍ୟାଳୟରୁ ନ୍ୟୁନ ଡିଗ୍ରୀ ଏଲ୍.ଏମ୍.ଏସ୍. ମିଳିଥିଲା । ସୁତରାଂ ବହୁଚେଷ୍ଟା ସତ୍ତ୍ୱେ ମଧ ସେ ତତ୍କାଳୀନ ମାଡ୍ରାସ୍ ମେଡ଼ିକାଲ୍ ସର୍ଭିସ୍‌ରେ ଯୋଗଦାନ କରି ନପାରି 'ଡ. ଲକ୍ଷ୍ମୀପତି ଆୟୁର୍ବେଦିକ୍ କଲେଜ'ରେ ଆନାଟୋମୀ ଅଧ୍ୟାପକ ଭାବେ କୌଣସି ମତେ ଅବସ୍ଥାପିତ ହୋଇଥିଲେ । ସେଠାରେ ଥିଲାବେଳେ ସୌଭାଗ୍ୟକ୍ରମେ ଜଣେ ଆମେରିକୀୟ ଡାକ୍ତରଙ୍କ ସହ ତାଙ୍କର ପରିଚିତି ଓ ବନ୍ଧୁତ୍ୱ ହେଲା । ତାଙ୍କ ପରାମର୍ଶ ଓ

ସହଯୋଗ କ୍ରମେ କେତେକ ଦାତବ୍ୟ ଅନୁଷ୍ଠାନ ତଥା ତାଙ୍କ ଶ୍ୱଶୁରଙ୍କ ଆର୍ଥିକ ଅନୁଦାନକୁ ପାଥେୟ କରି ସୁବ୍ବା ରୋ' ଉଚ୍ଚଶିକ୍ଷା ପାଇଁ ୧୯୨୩ ମସିହାରେ ଆମେରିକା ଚାଲିଗଲେ ।

ଆମେରିକାରେ ମଧ୍ୟ ତାଙ୍କ ଅବଶିଷ୍ଟ ଜୀବନ (ପ୍ରାୟ ୨୫ ବର୍ଷ) ବହୁ ଉତ୍‌ଥାନ ପତନ ମଧ୍ୟରେ କଟିଥିଲା । ତାଙ୍କ ବୈଜ୍ଞାନିକ ଗବେଷଣା ତଥା ବିଶିଷ୍ଟ ବୈଜ୍ଞାନିକମାନଙ୍କ ମଧ୍ୟରେ ତାଙ୍କର ସ୍ୱତନ୍ତ୍ର ପରିଚିତି ପାଇଁ ଯଦିଓ ଆମେରିକାର ଶୈକ୍ଷିକ, ସାମାଜିକ ଏବଂ ରାଜନୈତିକ ପରିବେଶ ଯଥେଷ୍ଟ ସୁଯୋଗ ତାଙ୍କୁ ଯୋଗାଇ ଦେଇଥିଲା ତେବେ ବି ଜଣେ ପ୍ରବାସୀ ନାଗରିକ ବିଚାରରେ ଅନେକ ପ୍ରାଶାସନିକ ଅଙ୍କୁଶ ଓ କଟକଣାର ସମ୍ମୁଖୀନ ହେଉଥିଲେ ସେ । ସେତେବେଳର ନିୟମାନୁଯାୟୀ ଜଣେ ଡାକ୍ତର ଭାବେ ଆମେରିକାରେ ସାମୟିକ ପ୍ରବେଶ ଅଧିକାର ପାଇଥିଲେ ବି ସେଠାର କୌଣସି କର୍ମକ୍ଷେତ୍ରରେ ନିଯୁକ୍ତି ପାଇବା ପାଇଁ ନିୟମତଃ ପ୍ରଥମେ ତାଙ୍କୁ ରସାୟନ ବିଜ୍ଞାନରେ ପ୍ରଶିକ୍ଷଣ ନେବାକୁ ପଡ଼ିଥିଲା । ତା'ପରେ ସେ ହାର୍ଭାର୍ଡ୍ ମେଡ଼ିକାଲ୍ ସ୍କୁଲ୍‌ରେ ଜଣେ କନିଷ୍ଠ ଗବେଷଣା ସହକାରୀ ପଦରେ ନିଯୁକ୍ତ ହେଲେ । ତାଙ୍କ ଦୁଇବର୍ଷିଆ ଛାତ୍ରଭିସାକୁ ଥରକୁ ଥର ଆନୁଷଙ୍ଗିକ ଯାଞ୍ଚ କରାଗଲା ପରେ ଯାଇ ରହଣି ସମୟକୁ ବଢ଼ାଯାଉଥିଲା । ସୁତରାଂ ଗବେଷଣା କରୁଥିଲା ବେଳେ ନାନାପ୍ରକାର ଆଶା-ଆଶଙ୍କା ଓ ମାନସିକ ଅଶାନ୍ତି ମଧ୍ୟରେ ସେ କାଳାତିପାତ କରୁଥିଲେ । ଦୁର୍ଯୋଗକୁ ୨ୟ ବିଶ୍ୱଯୁଦ୍ଧ ଲାଗିଯିବା ସଙ୍ଗେ ସଙ୍ଗେ 'ବିଦେଶୀ ରେଜିଷ୍ଟ୍ରେସନ୍ ଆକ୍ଟ' (Alien Registration Act)କୁ କଡ଼ାକଡ଼ି ଜାରି କରାଗଲା; ଫଳରେ ସୁବ୍ବା ରୋ'ଙ୍କୁ ସବୁବେଳେ ତାଙ୍କ ପରିଚୟ ପତ୍ରକୁ ବେକରେ ଝୁଲାଇବାକୁ ପଡୁଥିଲା । ତାଙ୍କ ରେଜିଷ୍ଟ୍ରେସନ୍ କାର୍ଡ଼ ନମ୍ବର ଥିଲା ୩୪୨୦୫୬୪ ଏବଂ ସେ କାର୍ଡ଼ ତାଙ୍କ ଅଙ୍ଗୁଳିଛାପ ବି ବହନ କରିଥିଲା । ୧୯୬୪ ମସିହାରେ ଏ କଟକଣା କୋହଳ ହେବାପରେ ତାଙ୍କୁ ଆମେରିକୀୟ ନାଗରିକତ୍ୱର ସ୍ୱୀକୃତି ମିଳିଥିଲା । କିନ୍ତୁ ସେତେବେଳକୁ ନିଜ ଜାତୀୟତାରେ ଜଳାଞ୍ଜଳି ଦେଇ ପରାନୁଗୃହୀତ ଜାତୀୟତାର ପ୍ରମାଣପତ୍ରରେ ମଣ୍ଡିତ ହେବା ପାଇଁ ସେ ଆଉ ଆଗ୍ରହୀ ନଥିଲେ । ଘଟଣାକ୍ରମେ ଦୁଇ ବର୍ଷ ମଧ୍ୟରେ, ୧୯୪୮ ମସିହା ଅଗଷ୍ଟ ଆଠ ତାରିଖରେ, ସେଇ ଆମେରିକାରେ ତାଙ୍କର ଦେହାନ୍ତ ଘଟିଥିଲା ଜଣେ ବିଶିଷ୍ଟ ଭାରତୀୟ ବୈଜ୍ଞାନିକର ପରିଚୟ ନେଇ ।

ଆମେରିକାରେ ଥିବାବେଳେ ଡକ୍ଟର ସୁବ୍ବା ରୋ'ଙ୍କ ଗବେଷଣାଲବ୍ଧ ଫଳଶ୍ରୁତି ମୁଖ୍ୟତଃ ୬ଟି ଅନନ୍ୟ ଅବଦାନ ପାଇଁ ସର୍ବକାଳୀନ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛି । ସେଗୁଡ଼ିକ ହେଲା -

୧. **ରକ୍ତରେ ଥିବା ଫସ୍‌ଫରସ୍ ପରିମାଣ ନିର୍ଦ୍ଧାରଣ ପ୍ରଣାଳୀ : ୧୯୨୫-୨୬** ମସିହାରେ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟରେ ଡାକ୍ତର 'ସାଇରସ୍ ଫିସ୍କେ' (Cyrus Fiske)ଙ୍କ ତତ୍ତ୍ୱାବଧାନରେ ଗବେଷଣା କରୁଥିବା ବେଳେ ଡକ୍ଟର ସୁବ୍‌ବା ରୋ' ପ୍ରଥମେ ଏ ପଦ୍ଧତି ପ୍ରଚଳନ କରିଥିଲେ । ଏହା ଏବେ ମଧ୍ୟ ରକ୍ତ ଓ ପରିସ୍ରାରେ ଫସ୍‌ଫରସ୍ ନିରୂପଣ ପାଇଁ "Fiske-Subba Row Rapid Colorimetric Method" ରୂପେ ବ୍ୟବହୃତ ହେଉଛି ଏବଂ ଏ ପରୀକ୍ଷଣ ରିକେଟ୍, ବୃକ୍କରୋଗ ଓ ପାରାଥାଇରଏଡ୍ ରୋଗର ସହଜ ନିଦାନ ଭାବେ ଏବେ ମଧ୍ୟ ସ୍ୱୀକୃତ ରହିଛି ।

୨ । **ମାଂସପେଶୀରେ ଫସ୍ଫୋକ୍ରିଏଟିନ୍ (Phosphocreatine) ଏବଂ ଏ.ଟି.ପି. (ATP = Adenosine Triphosphate) ଅଣୁର ସ୍ଥିତି ସମ୍ପର୍କରେ ପ୍ରଥମ ସୂଚନା :** ଏହା ଏକ ଯୁଗାନ୍ତକାରୀ ଆବିଷ୍କାର ରୂପେ ବିବେଚିତ ହୋଇଥାଏ । କାରଣ ଏହା ଆବିଷ୍କୃତ ହେଲା ପରେ ମାଂସପେଶୀର କ୍ରିୟାକର୍ମ ଏବଂ କୋଷାଭ୍ୟନ୍ତରସ୍ଥ 'ଶର୍କରା'ର ପରିକାୟନ ପ୍ରକ୍ରିୟାରେ ଏହାର ଅପରିହାର୍ଯ୍ୟ ଭୂମିକା ବିଷୟରେ ପ୍ରକୃତ ତଥ୍ୟ ଉଦ୍‌ଘାଟିତ ହୋଇ ପାରିଥିଲା । ସୁବ୍‌ବା ରୋ' ଓ 'ଫିସ୍କେ'ଙ୍କ ଏହି ଆବିଷ୍କାର ସାରା ପୃଥିବୀରେ ସେତେବେଳେ ଏକ ପ୍ରକାର ଅବିଶ୍ୱସନୀୟ ଚମକ ସୃଷ୍ଟି କରିଥିଲା; କାରଣ ଏହା 'ବିଶ୍ୱପ୍ରସିଦ୍ଧ ନୋବେଲ ସଂସ୍ଥା'ଙ୍କ ପୁରସ୍କାର-ଚୟନ-ପ୍ରକ୍ରିୟାର ଭୁଲ-ଭ୍ରାନ୍ତିକୁ ଲୋକଲୋଚନକୁ ଆଣିଥିଲା । ବୈଜ୍ଞାନିକମାନଙ୍କର ବ୍ୟକ୍ତିଗତ ପ୍ରତିଷ୍ଠା ବିଚାରରେ ସେମାନଙ୍କ ପ୍ରତି ଅହେତୁକ ଅନୁକଂପା ପ୍ରଦର୍ଶନ କରାଯାଇ କିପରି ନୋବେଲ୍ ପୁରସ୍କାର ଦିଆଯାଇପାରେ, ତାହାର ତୀର୍ଯ୍ୟକ୍ ସୂଚନା ମିଳିଲା । ଫଳତଃ ୧୯୨୨ ମସିହାରେ ପ୍ରଦତ୍ତ ଶରୀରତତ୍ତ୍ୱ/ଭେଷଜ ବିଜ୍ଞାନ ନୋବେଲ ପୁରସ୍କାର ବିତର୍କ-ବଳୟ ମଧ୍ୟକୁ ଆସିଗଲା, କାରଣ ସେ ବର୍ଷର ପୁରସ୍କାର ବିଜେତା ବରିଷ୍ଠ ବିଜ୍ଞାନୀ ଅଟୋ ମେୟରହଫ୍ (Otto Meyerhof) ଓ ଆର୍ଚିବାଲଡ଼ ହିଲ୍ (Archibald Hill) ପେଶୀ ସଂକୋଚନ କ୍ରିୟା ପାଇଁ 'ଗ୍ଲାଇକୋଜେନ୍'ର ଲାକ୍‌ଟିକ୍ ଅମ୍ଳକୁ ରୂପାନ୍ତରଣ ହେବା ପ୍ରକ୍ରିୟାକୁ ହିଁ ମୁଖ୍ୟତଃ ଦାୟୀ ବୋଲି ମତ ପ୍ରକାଶ କରିଥିଲେ । ଏଥିପାଇଁ ଶକ୍ତି ସମୃଦ୍ଧ ଅନ୍ୟ କୌଣସି ରାସାୟନିକ ଅଣୁର ଯେ ଭୂମିକା ଥାଇପାରେ ଏହା ତାଙ୍କ କଳ୍ପନା ବାହାରେ ଥିଲା । କିନ୍ତୁ ଫିସ୍କେ-ସୁବ୍‌ବା ରୋ'ଙ୍କ କ୍ରିଏଟିନ୍ ଫସ୍‌ଫେଟ୍ ଓ ଏ.ଟି.ପି. ଆବିଷ୍କାର ପରେ ମେୟର ହଫ୍ ଓ ହିଲ୍‌ଙ୍କ ସିଦ୍ଧାନ୍ତ ଭୁଲ୍ ବୋଲି

ପ୍ରମାଣିତ ହେଲା । ବିଡ଼ମ୍ବନାର ବିଷୟ ଯେ ଏ ଭ୍ରାନ୍ତ ଧାରଣା ସତ୍ତ୍ୱେ ସେ ଦୁଇଜଣ ନୋବେଲ୍ ପୁରସ୍କାର ପାଇସାରିଥିଲେ ।

୩। **ସର୍ବପ୍ରଥମ 'ଟେଟ୍ରାସାଇକ୍ଲିନ୍' (Tetracyclin) ବର୍ଗୀୟ ଆଣ୍ଟିବାୟୋଟିକ୍ ଔଷଧର ଆବିଷ୍କାର ଓ ପ୍ରସ୍ତୁତି :** ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଯୁଦ୍ଧରେ ଆହତ ସୈନିକମାନଙ୍କୁ ମାରାତ୍ମକ ଅଣୁଜୀବ ସଂକ୍ରମଣରୁ ରକ୍ଷା କରିବା ପାଇଁ ଡକ୍ଟର ସୁବ୍ବା ରୋ' ଏକ ଶକ୍ତିଶାଳୀ ଜୀବଘ୍ନ ଔଷଧ ବା ଆଣ୍ଟିବାୟୋଟିକ୍ (antibiotic) ସନ୍ଧାନରେ ଗବେଷଣା ଚଳାଇଲେ । ସେଥିପାଇଁ ସେ ଅନେକ ପ୍ରକାର ମୃତ୍ତିକାରୁ ସଂଗୃହୀତ ଫିମ୍ପି (mould) ଓ ଅଣୁଜୀବମାନଙ୍କର ଅନୁସନ୍ଧାନ କଲେ । ଶେଷରେ ୧୯୪୫ ମସିହା ଅଗଷ୍ଟ ମାସରେ ତାଙ୍କର ଅନ୍ୱେଷା ସଫଳକାମ ହେଲା, ଯେତେବେଳେ କର୍ଷଣ ଆଧାରରେ ସେ ଏକ ସୁନେଲି ରଙ୍ଗର ଫିମ୍ପିରୁ ଏକ ଶକ୍ତିଶାଳୀ ଜୀବଘ୍ନ ଉପାଦାନର ସନ୍ଧାନ ପାଇଲେ । ପରବର୍ତ୍ତୀ ଅନେକ ପରୀକ୍ଷା ନିରୀକ୍ଷାରୁ ପ୍ରତିପାଦିତ ହେଲା ଯେ, ଏ ନୂତନ ଉପାଦାନଟି ଉଭୟେ ଗ୍ରାମ୍ ପଜିଟିଭ୍ (Gm +ve) ଓ ଗ୍ରାମ୍ ନେଗେଟିଭ୍ (Gm -ve) ଜୀବାଣୁମାନଙ୍କ ବିନାଶକାରୀ ହେବା ସାଥେ ସାଥେ କେତେକ ଭୂତାଣୁ (virus) ବିରୋଧରେ ମଧ୍ୟ ଫଳପ୍ରଦ ହୋଇପାରୁଛି । ଏହା ହିଁ ପ୍ରଥମ 'ଟେଟ୍ରାସାଇକ୍ଲିନ୍' ଔଷଧର ଇତିବୃତ୍ତ । ସୁନେଲି ରଙ୍ଗର ଫିମ୍ପିରୁ ନିଃସୃତ ହୋଇଥିବା ଯୋଗୁଁ ପ୍ରଥମ ଟେଟ୍ରାସାଇକ୍ଲିନ୍‌କୁ 'ଅରିଓମାଇସିନ୍' (Aureomycin) ନାମକରଣ କରାଯାଇଥିଲା । ସେତେବେଳକୁ ବାହାରି ସାରିଥିବା ଜୀବଘ୍ନ ଔଷଧ ପେନିସିଲିନ୍ କେବଳ ଗ୍ରାମ୍ ପଜିଟିଭ୍ ବର୍ଗୀୟ ଜୀବାଣୁ ଏବଂ 'ଷ୍ଟ୍ରେପ୍‌ଟୋମାଇସିନ୍' କେବଳ ଗ୍ରାମ୍ ନେଗେଟିଭ୍ ଜୀବାଣୁ ବିରୋଧରେ କ୍ରିୟାଶୀଳ ହେଉଥିବା ବେଳେ 'ଟେଟ୍ରାସାଇକ୍ଲିନ୍' ଉଭୟ ବର୍ଗର ଜୀବାଣୁ ତଥା ଅନେକ ଭୂତାଣୁ ବିନାଶକାରୀ ଔଷଧ ରୂପେ ଉଭା ହେଲା । ଆମ ଦେଶର ଏକ ସୁପରିଚିତ ଔଷଧ କମ୍ପାନୀ ନିଜେ ତିଆରି କରୁଥିବା 'ଟେଟ୍ରାସାଇକ୍ଲିନ୍' ଔଷଧର ନାମକରଣ ଡକ୍ଟର ସୁବ୍ବା ରୋ'ଙ୍କ ସମ୍ମାନାର୍ଥେ 'ସୁବାମାଇସିନ୍' ରଖିଥିଲେ । ପ୍ରସଙ୍ଗକ୍ରମେ ଉଲ୍ଲେଖନୀୟ ଯେ ୧୯୯୪ ମସିହାରେ ଆମେ ସୁବ୍ବା ରୋ'ଙ୍କ ଜନ୍ମ ଶତବାର୍ଷିକୀ ପାଳନ କରୁଥିଲାବେଳେ ଗୁଜୁରାଟ ଓ ମହାରାଷ୍ଟ୍ରରେ ଯେଉଁ ଭୟାବହ ପ୍ଲେଗ୍‌ରୋଗର ଅଭ୍ୟୁଦୟ

ଘଟିଥିଲା, ତା'ର ସଫଳ ନିୟନ୍ତ୍ରଣ ପାଇଁ ଏହି ଟେଟ୍ରାସାଇକ୍ଲିନ୍ ଶ୍ରେଣୀୟ ଔଷଧ 'ଡକ୍ସିସାଇକ୍ଲିନ୍' ହିଁ ମୁଖ୍ୟ ଭୂମିକା ନିର୍ବାହ କରିଥିଲା । ମୃତ୍ୟୁର ୫୦ ବର୍ଷ ପରେ ଆମ ଦେଶର କୋଟି କୋଟି ଲୋକ ତାଙ୍କର ଏହି ଅମୂଲ୍ୟ ଅବଦାନ ପାଇଁ ସୁବ୍ବା ରୋ'ଙ୍କୁ ସ୍ମରଣ କରୁଥିଲେ । ଏହା ହୁଏତ ତାଙ୍କ ଦିବଂଗତ ଆତ୍ମା ପ୍ରତି ଦେଶବାସୀଙ୍କର ଶ୍ରେଷ୍ଠ ସମ୍ମାନ ରୂପେ ବିବେଚିତ ହେବ । ତା'ଛଡ଼ା ଏହି ନିକଟ ଅତୀତରେ ଟେଟ୍ରାସାଇକ୍ଲିନ୍‌ର ମେଲେରିଆ ନିରୋଧକ ଗୁଣ ଥିବା ଜଣାଯାଇଛି । ଫଳତଃ ମେଲେରିଆ ପରି ସର୍ବବ୍ୟାପୀ ମହାମାରୀର ସଫଳ ନିୟନ୍ତ୍ରଣ ପାଇଁ ଏ ଔଷଧର ବ୍ୟବହାର ସୁବ୍ବାରୋଙ୍କ ସ୍ମୃତିକୁ ହୁଏତ ଚିରକାଳ ଉଜ୍ଜୀବିତ କରି ରଖିବ ।

୪ । **ଫାଇଲେରିଆ ରୋଗର ଅନନ୍ୟ ଫଳପ୍ରଦ ଔଷଧ 'ଡାଇଇଥାଇଲ୍-କାର୍ବାମାଜିନ୍' (Diethylcarbamazine) :** ଆମେରିକାର 'ଲେଡ଼େର୍ଲି' (Lederle) କମ୍ପାନୀରେ ଗବେଷଣା ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରୁଥିଲାବେଳେ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳରେ ଯୁଦ୍ଧରତ ସୈନିକମାନଙ୍କୁ ଫାଇଲେରିଆ ଓ ମେଲେରିଆ ସଂକ୍ରମଣରୁ ରକ୍ଷା କରିବା ପାଇଁ କମ୍ପାନୀ ନିର୍ଦ୍ଦେଶରେ ସେ ନୂଆ ନୂଆ ଫଳପ୍ରଦ ଔଷଧ ଉଦ୍ଭାବନ ପାଇଁ ଏକ ପ୍ରକଳ୍ପର ଦାୟିତ୍ୱ ନେଇଥିଲେ । ତାଙ୍କର ଜୀବରସାୟନ ବିଦ୍ୟା ସମ୍ପର୍କିତ ଅସାଧାରଣ ବ୍ୟୁତ୍ପତ୍ତି ତାଙ୍କୁ 'ଡାଇଇଥାଇଲ୍ କାର୍ବାମାଜିନ୍' ସଂଶ୍ଳେଷଣ ପାଇଁ ଅନୁପ୍ରେରିତ କରିଥିଲା । ଏହି ସଂଶ୍ଳେଷିତ ରାସାୟନିକ ବସ୍ତୁକୁ ନେଇ ପ୍ରଥମେ ଲେଡ଼େର୍ଲି କମ୍ପାନୀ 'ହେଟ୍ରାଜାନ୍' (Hetrazan) ନାମକ ବଟିକା ପ୍ରସ୍ତୁତ କଲା - ଯାହା ଫାଇଲେରିଆ ରୋଗ ପାଇଁ ଅବ୍ୟର୍ଥ ଔଷଧ ବୋଲି ଜଣାଗଲା । ପରବର୍ତ୍ତୀ କାଳରେ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା (WHO)ର ଅନୁମୋଦନ କ୍ରମେ ସାରା ବିଶ୍ୱରେ ଏ ଔଷଧର ବହୁଳ ପ୍ରଚଳନ କରାଯାଇଥିଲା । ବିଶେଷ କରି ଉଷ୍ମମଣ୍ଡଳୀୟ ଦେଶମାନଙ୍କରେ ଏ ରୋଗର ବ୍ୟାପ୍ତି ଓ ବିସ୍ତାର ହେଟ୍ରାଜାନ୍ ଉପଲବ୍ଧ ହେଲା ପରେ ଅନେକତଃ ନିୟନ୍ତ୍ରିତ ହୋଇ ପାରିଲା ।

୫ । **ଫଲିକ୍ ଏସିଡ୍ ଭିଟାମିନ୍ ଆବିଷ୍କାର ଏବଂ ତାର ସଂଶ୍ଳେଷଣ :** ଚିକିତ୍ସା ଜଗତକୁ ଡକ୍ଟର ସୁବ୍ବା ରୋ'ଙ୍କର ଏହା ଶ୍ରେଷ୍ଠତମ ଅବଦାନ ବୋଲି ବିବେଚିତ ହୋଇଥାଏ । କାରଣ ଫଲିକ୍ ଏସିଡ୍ ଅଭାବରୁ ସୃଷ୍ଟ ଅପପୋଷଣ ଜନିତ

ରକ୍ତହୀନତା (nutritional anaemia)ର ଫଳପ୍ରଦ ଚିକିତ୍ସା ସମ୍ବନ୍ଧରେ ତାଙ୍କ ସମୟ ଯାଏଁ ଚିକିତ୍ସକମାନେ ସ୍ଥିର ନିଶ୍ଚିତ ହୋଇପାରୁ ନଥିଲେ । ଡକ୍ଟର ସୁବ୍ବା ରୋ'ଙ୍କ ନେତୃତ୍ୱ, ଦିଗ୍‌ଦର୍ଶନ ଓ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅନେକ ଆମେରିକୀୟ ଯୁବ ବୈଜ୍ଞାନିକଙ୍କ ଗବେଷଣାର ଫଳଶ୍ରୁତି ସ୍ୱରୂପ ଯକୃତ୍ ତନ୍ତୁ ଏବଂ କର୍ଷିତ ଅଣୁଜୀବ ରସ (microbial broth)ରୁ ପ୍ରାକୃତିକ ଫଲିକ୍ ଏସିଡ୍ ସଂଗ୍ରହ ତଥା ରାସାୟନିକ ପ୍ରଣାଳୀରେ ତା'ର ସଂଶ୍ଳେଷଣ ସମ୍ଭବ ହୋଇପାରିଲା । ଉଷ୍ମମଣ୍ଡଳୀୟ 'ସ୍ପ୍ରୁ' (tropical sprue) ନାମକ ପ୍ରାଣଘାତୀ ରୋଗ ପାଇଁ ଏ ଭିଟାମିନ୍ ଅମୋଘ ଅସ୍ତ୍ର ପରି କାମ ଦେଲା । ଏହାର ଆବିଷ୍କାର ଓ ସଂଶ୍ଳେଷଣ ଆଧାରିତ ଗବେଷଣା ଭିତ୍ତିକ ତଥ୍ୟ ଆନ୍ତର୍ଜାତିକ ବିଜ୍ଞାନ ପତ୍ରିକା 'ସାଇନ୍‌ସ' (Science : Vol 103, p. 667 : 1946)ରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏଥିରେ ସୁବ୍ବା ରୋ'ଙ୍କ ସହ ଅନ୍ୟ ୧୫ ଜଣ ସହକର୍ମୀ ବୈଜ୍ଞାନିକଙ୍କ ନାମ ସ୍ଥାନିତ କରାଯାଇଥିଲା । କାରଣ ସୁବ୍ବା ରୋ'ଙ୍କ ବିଚାରରେ ଫଲିକ୍ ଏସିଡ୍ ଗବେଷଣାର ଶ୍ରେୟଃ ସମସ୍ତଙ୍କ ପାଇଁ ସମାନ ଭାବେ ପ୍ରାପ୍ୟ ଥିଲା । ଦିଗ୍‌ଦର୍ଶନ ତଥା ବରିଷ୍ଠତା ଭିତ୍ତିରେ ଯଦିଓ ତାଙ୍କର ଅବଦାନ ସବୁଠାରୁ ଅଧିକ ଥିଲା, ସେ ନିଜେ କିନ୍ତୁ ବର୍ଣ୍ଣମାଳା କ୍ରମରେ ତାଙ୍କ ନାମକୁ ଲେଖାର ଶେଷ ଆଡ଼କୁ ସ୍ଥାନିତ କରି ଗବେଷକ ଗୋଷ୍ଠୀର କନିଷ୍ଠତମ ସଦସ୍ୟ କୟ୍ ୱାଲ୍ଲର୍ (Coy Waller)ଙ୍କ ନାମ ସର୍ବପ୍ରଥମେ ସ୍ଥାନିତ କରିଥିଲେ । ନିରହଙ୍କାର, ଗୁଣୀ ତଥା ଗୁଣରାଗୀ ବରିଷ୍ଠ ସହକର୍ମୀ ଭାବେ ଏହା ତାଙ୍କର ମହାନୁଭବତା ପ୍ରତିପାଦିତ କରିଥାଏ ।

୬ । **ଫଲିକ୍ ଏସିଡ୍ ପ୍ରତିରୋଧୀ (Folic acid antagonist)ର ସନ୍ଧାନ :** ବିଭିନ୍ନ ଉତ୍ସରୁ ଉପଲବ୍ଧ ଫଲିକ୍ ଏସିଡ୍‌ର ବ୍ୟବହାର ଦ୍ୱାରା କେତେକ କର୍କଟ ରୋଗୀଙ୍କଠାରେ ରୋଗ ଲକ୍ଷଣ କିଛି ପରିମାଣରେ ହ୍ରାସ ପାଉଥିବା ଏବଂ ରୋଗ ଯନ୍ତ୍ରଣା ପ୍ରଶମିତ ହେଉଥିବା ତାଙ୍କର କେତେକ ସହକର୍ମୀଙ୍କଠାରୁ ଜାଣି ଡକ୍ଟର ସୁବ୍ବା ରୋ' ପ୍ରଥମେ ଦ୍ୱନ୍ଦ୍ୱରେ ପଡ଼ିଲେ । ଜଣେ ଜୈବରସାୟନବିତ୍‌ର ତର୍କସିଦ୍ଧ ବିଚାରରେ ଏହା ଏକ ଜୈବିକ ବିରୋଧାଭାସ ପରି ତାଙ୍କୁ ପ୍ରତୀୟମାନ ହେଲା । କାରଣ ଫଲିକ୍ ଏସିଡ୍‌ର ସ୍ୱାଭାବିକ ଧର୍ମ ହେଲା ଜୀବକୋଷର ପୋଷଣ, ବୃଦ୍ଧି ଓ ବିଭାଜନରେ ସହାୟକ ହେବା । ସୁତରାଂ ଅବାରିତ ବୃଦ୍ଧି ଓ ବିଭାଜନପ୍ରବଣ କର୍କଟ କୋଷମାନଙ୍କର ସ୍ୱାଭାବିକ କ୍ରିୟାକୁ ଏହା ପ୍ରତିହତ କରିପାରିବ କିପରି ? ତେଣୁ ସେ ଫଲିକ୍ ଏସିଡ୍‌ର

ଗାଠନିକ ବିନ୍ୟାସରେ କେତେକ ରାସାୟନିକ ପରିବର୍ତ୍ତନ ଘଟାଇ କର୍କଟ କୋଷିକା ଉପରେ ତା'ର ପ୍ରଭାବ ଅନୁଧ୍ୟାନ କରିବାକୁ ସହକର୍ମୀମାନଙ୍କୁ ନିର୍ଦ୍ଦେଶ ଦେଲେ । ଏ ଗବେଷଣାର ଫଳଶ୍ରୁତି ରୂପେ ପ୍ରଥମ 'ଫଲିକ୍ ଏସିଡ୍ ପ୍ରତିରୋଧୀ ଔଷଧ' 'ଏମିନୋପ୍‌ଟେରିନ୍' (aminopterin) ଉଦ୍ଭାବିତ ହେଲା । ପିଲାଙ୍କ ରକ୍ତ କର୍କଟ ବା ଉଗ୍ର ଲ୍ୟୁକିମିଆ (acute leukaemia)ର ପ୍ରଶମନରେ ଏହା ବିଶେଷ ଭାବେ ସହାୟକ ହେଉଥିବା ଜଣାଗଲା । ପରେ ପରେ ସମଧର୍ମୀ ଅନ୍ୟ କେତେକ ଫଲିକ୍ ଏସିଡ୍ ପ୍ରତିରୋଧୀ ଔଷଧ, ଯଥା - ଏମିଥୋପ୍‌ଟେରିନ୍ (amethopterin), ମେଥୋଟ୍ରେକ୍ସେଟ୍ (methotrexate) ଆଦି ପ୍ରସ୍ତୁତ କରାଗଲା ।

ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ, ୧୦ ବର୍ଷରୁ କମ୍ ସମୟ ବ୍ୟବଧାନରେ ଡକ୍ଟର ସୁବ୍ବା ରୋ' ୪ଟି ଅମୂଲ୍ୟ ଭେଷଜୀୟ ପଦାର୍ଥ ଏବଂ ଦୁଇଟି ଜୈବରାସାୟନିକ ତଥ୍ୟର ଦିଗ୍‌ଦ୍ରଷ୍ଟା ହୋଇ ମଧ୍ୟ ଯଥାଯୋଗ୍ୟ ଆନ୍ତର୍ଜାତିକ ସ୍ୱୀକୃତି ଓ ସମ୍ମାନର ଅଧିକାରୀ ହୋଇପାରିଲେ ନାହିଁ କାହିଁକି ? ଏହାର ମୁଖ୍ୟ କାରଣ ହେଲା ତାଙ୍କର ଅନ୍ତର୍ମୁଖୀ ନମ୍ର ବ୍ୟକ୍ତିତ୍ୱ, ଆତ୍ମପ୍ରଚାର ବିମୁଖତା, ବିଶାଳ ହୃଦୟବତ୍ତା, ସ୍ୱାଧିକାର ସାବ୍ୟସ୍ତ କରାଇବା ବା ପେଟେଣ୍ଟ (patent) ବ୍ୟାପାର ପ୍ରତି ଅସ୍ପୃହା ଏବଂ ସର୍ବୋପରି ଗବେଷଣାଲବ୍ଧ ଫଳାଫଳର ପରିବେଷଣ ଓ ପ୍ରକାଶନ କ୍ଷେତ୍ରରେ ସ୍ୱେଚ୍ଛାକୃତ ଭାବେ ମଞ୍ଚନାୟକ ଭୂମିକାକୁ ଛାଡ଼ି 'ନେପଥ୍ୟ ଦିଗ୍‌ଦର୍ଶକ'ର ଗୌଣ ଭୂମିକାକୁ ଆଦରି ନେବାର ପ୍ରବୃତ୍ତି । ନିମ୍ନୋକ୍ତ ଉଦାହରଣଗୁଡ଼ିକରୁ ଏହା ସ୍ପଷ୍ଟ ଭାବେ ପ୍ରତୀୟମାନ ହୋଇଥାଏ ।

(କ) ଟେଟ୍ରାସାଇକ୍ଲିନ୍‌ର ପ୍ରସ୍ତୁତି ଓ ପରିବେଷଣରେ ସେ ସହକର୍ମୀ ବେଞ୍ଜାମିନ୍ ଡୁଗଗର୍ (Benzamin Dugger)ଙ୍କ ଭୂମିକାକୁ ଅଧିକ ପ୍ରାଧାନ୍ୟ ଦେଇଥିଲେ ।

(ଖ) ଫଲିକ୍ ଏସିଡ୍ ପରିବେଷଣରେ ତାଙ୍କର କନିଷ୍ଠତମ ସହଯୋଗୀ କୟ୍ ୱାଲ୍ଲର୍‌ଙ୍କର 'Shotgun Synthesis' ପ୍ରଣାଳୀକୁ ସେ ଗୁରୁତ୍ୱ ଦେଇଥିଲେ ।

(ଗ) ଫଲିକ୍ ଏସିଡ୍ ପ୍ରତିରୋଧୀ ଔଷଧ ପ୍ରସ୍ତୁତି ପାଇଁ ସହଯୋଗୀ 'ସିଡ୍‌ନୀ ଫାର୍ବର୍' (Sydney Farber)ଙ୍କ ଅବଦାନକୁ ସେ ମୁଖ୍ୟଶ୍ରେୟଃ ଦେଇଥିଲେ ।

(ଘ) ଫାଇଲେରିଆ ଔଷଧ ଡାଇ-ଇଥାଇଲ୍-କାର୍ବାମାଜିନ୍ ପାଇଁ ସହକର୍ମୀ 'ରେଡ୍‌ଜିନାଲ୍ ହେୱିଟ୍' (Redginal Hewitt)ଙ୍କର ଭୂମିକା ବେଶୀ ଥିଲା ବୋଲି ସେ ସ୍ୱୀକାର କରୁଥିଲେ ।

ଡା. ସୁବ୍ବା ରୋ'ଙ୍କ ଅନନ୍ୟ ପ୍ରତିଭା ବିଷୟରେ ତାଙ୍କର ସହକର୍ମୀ ଓ ସମକାଳୀନ ଅନ୍ୟ ଅନେକ ବରିଷ୍ଠ ବୈଜ୍ଞାନିକ ସହମତି ପ୍ରକାଶ କରିଛନ୍ତି । କିନ୍ତୁ ସ୍ୱୀୟ କୃତି ଓ କୀର୍ତ୍ତି ଆଧାରରେ ସେ ଯେ ଜୀବଦ୍ଦଶାରେ ଯଥାଯୋଗ୍ୟ ବୈଜ୍ଞାନିକ ସ୍ୱୀକୃତି ଲାଭ କରିପାରି ନଥିଲେ, ସେଥିପାଇଁ ତାଙ୍କର ନିଃସ୍ପୃହ ବ୍ୟକ୍ତିତ୍ୱକୁ ହିଁ ସେମାନେ ଦାୟୀ କରିଛନ୍ତି । ସୁବ୍ବା ରୋ'ଙ୍କୁ ଅତି ନିକଟରୁ ଜାଣିଥିବା ଜଣେ ଆମେରିକୀୟ 'ପେଟେଣ୍ଟ୍ ଏଟର୍ନି'ଙ୍କ ମତରେ - 'ବିଜ୍ଞାନ ବଣିଜ' ପାଇଁ ସେ ଥିଲେ ପ୍ରାୟତଃ ଜଣେ ଅର୍ବାଚୀନ 'ବଣିକ' । ଜୈବରସାୟନଭିତ୍ତିକ ତାଙ୍କର ବହୁବିଧ ଗବେଷଣା ଫଳାଫଳକୁ ତନ୍ନତନ୍ନ ଅନୁଧ୍ୟାନ କଲାପରେ ବନ୍ଧୁ ଏଟର୍ନି ଜଣକ ଯୁଗପଦ୍ ବିସ୍ମୟ ପ୍ରକାଶ କରି କହିଥିଲେ ଯେ, ଏତେ ସବୁ ମୂଲ୍ୟବାନ ରାସାୟନିକ ବସ୍ତୁର ଉଦ୍ଭାବକ ହୋଇଥିବା ସତ୍ତ୍ୱେ ସେ ଯେ କୌଣସି ଗୋଟିଏ ପାଇଁ ପେଟେଣ୍ଟ୍ ହାସଲ କରିପାରିଲେ ନାହିଁ, ଏହା ନିଶ୍ଚିତ ଭାବେ ଚିନ୍ତାର ବିଷୟ । ସ୍ୱକର୍ତ୍ତୃକ ନୂଆ ନୂଆ ବୈଜ୍ଞାନିକ ଉଦ୍ଭାବନ ସହିତ ନିଜ ନାମକୁ ସର୍ବାଗ୍ରେ କିପରି ଯୋଡ଼ାଯାଏ, ସେ ଚାଲାକି କଳା ଡା. ସୁବ୍ବା ରୋ'ଙ୍କୁ ଜଣା ନଥିଲା । ତା'ଛଡ଼ା ବିଜ୍ଞାନ ଗବେଷଣା ପ୍ରକଳ୍ପମାନଙ୍କରେ ମିଳିମିଶି କାମ କରାଯାଉଥିଲେ ବି ଫଳାଫଳର ଶ୍ରେୟଃ ଦଳପତିଙ୍କର ପ୍ରାପ୍ୟ ବୋଲି ସେ ଭାବୁନଥିଲେ । ଦଳପତି ନିଜେ ଯଦି ଆୟାସଲବ୍ଧ ସିଦ୍ଧିକୁ ଯୌଥ ସମ୍ପତ୍ତି ବୋଲି ଭାବୁଥାନ୍ତି ଏବଂ ନିଜଆଡୁ ଆପାତଃ ତିତିକ୍ଷା ଓ ବୈରାଗ୍ୟ ପ୍ରଦର୍ଶନ କରୁଥାନ୍ତି, ତାହା ଅନ୍ୟ ବୈଜ୍ଞାନିକମାନଙ୍କ ଦ୍ୱାରା ଭିନ୍ନ ଭାବେ ଗ୍ରହଣ କରାଯାଇଥାଏ । ନାଟକ ଶେଷରେ ମୁଖ୍ୟନାୟକ ଯଦି ସ୍ୱେଚ୍ଛାରେ ମଞ୍ଚ ଉପରକୁ ନଆସି ପାର୍ଶ୍ୱ ଅଭିନେତାମାନଙ୍କୁ ସବୁବେଳେ ମଞ୍ଚାରୂଢ଼ କରାଉଥାଆନ୍ତି ତେବେ ଦର୍ଶକମାନଙ୍କ ସ୍ୱୀକୃତି ଓ ସମର୍ଥନ କାହିଁକି ଅବା ମୁଖ୍ୟ ନାୟକଙ୍କ ଆଡ଼କୁ ଢଳିବ ? ମୋଟାମୋଟି ଭାବେ କହିବାକୁ ଗଲେ ସୁବ୍ବା ରୋ'ଙ୍କ କ୍ଷେତ୍ରରେ ଏହା ହିଁ ଘଟିଥିଲା । ବିଜ୍ଞାନ ଜଗତରେ ସେ ଏକ ପ୍ରକାର 'ଶ୍ମଶାନ ତୁଳସୀ' ହୋଇ ରହିଗଲେ । ବିଜ୍ଞାନ ସମ୍ମିଳନୀମାନଙ୍କରେ ତାଙ୍କର ଅଧିକାଂଶ ଗବେଷଣା ପ୍ରସୂତ ଫଳାଫଳ ସହକର୍ମୀମାନଙ୍କ ଦ୍ୱାରା ଉପସ୍ଥାପିତ କରାଇ ସେ ନିଜେ ଦର୍ଶକମଣ୍ଡଳୀରେ ଲୁଚିଯାଇ ଜଣେ ଶ୍ରୋତାର ଭୂମିକା ନେଉଥିବା ଯୋଗୁଁ ତାଙ୍କ ଅବଦାନର ସଠିକ ମୂଲ୍ୟାୟନ କରାଯାଇ ପାରୁନଥିଲା । ତା'ଛଡ଼ା ସ୍ୱଭାବତଃ ସେ ଥିଲେ ସଂକୋଚଶୀଳ ଅନ୍ତରାଭିମୁଖୀ ଓ ସ୍ୱାଭିମାନ ପ୍ରବଣ । ତେଣୁ ସାମ୍ବାଦିକ, ସତୀର୍ଥ ବୈଜ୍ଞାନିକ ଓ ବରିଷ୍ଠ ଗବେଷକମାନଙ୍କ ସହ ସ୍ୱଚ୍ଛନ୍ଦଭାବେ ମିଳାମିଶା କରି ନିଜ କୃତିର ପ୍ରଚାର ପ୍ରସାର କରାଇବା ଭଳି ପ୍ରବୃତ୍ତି

ତାଙ୍କଠି ନଥିଲା । ସୁତରାଂ ବିଜ୍ଞାନ ଜଗତର ନାନାବିଧ ନାମିଦାମି ଉପାଧି, ଉପାୟନ, ଉପଢ଼ୌକନ ଆଦିରେ ମଣ୍ଡିତ ହେବାର ସୁଯୋଗ ତାଙ୍କ ଭାଗ୍ୟରେ ଜୁଟି ନଥିଲା । ଏସବୁ ସତ୍ତ୍ୱେ ମଧ୍ୟ ହାର୍ଭାର୍ଡ଼ ମେଡ଼ିକାଲ୍ ସ୍କୁଲ୍‌ର ତତ୍କାଳୀନ ଅନେକ ସହକର୍ମୀ ମୁକ୍ତ କଣ୍ଠରେ ତାଙ୍କ ଅନନ୍ୟ ପ୍ରତିଭାକୁ ସଶ୍ରଦ୍ଧ ସମ୍ମାନ ଜଣାଉଥିଲେ । 'ସିନାମିଡ୍' (Cynamid) ନାମକ ଏକ ଆମେରିକୀୟ ଔଷଧ କମ୍ପାନୀ ଜୀବଘ୍ନ ଉତ୍ପାଦକ ଏକ ନୂଆ ପ୍ରଜାତି ଫିମ୍ପିର ନାମ ରଖିଥିଲେ 'ସୁବ୍‌ବାରୋମାଇସେସ୍ ସ୍ପ୍ଲେଣ୍ଡେନ୍‌ସ୍' (Subbaromyces splendens) ସୁବ୍‌ବା ରୋଙ୍କ ସ୍ମୃତିକୁ ସମ୍ମାନ ଜଣାଇ ।

ସୁବ୍‌ବା ରୋ'ଙ୍କ ବୈଜ୍ଞାନିକ ଗବେଷଣାର ଇତିବୃତ୍ତ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ସେ ନିଜ ଗବେଷଣା ଫଳାଫଳର ଗୁରୁତ୍ୱ ବିଷୟରେ ପ୍ରଥମରୁ ବିଶେଷ ସଚେତନ ହେଉ ନଥିଲେ । ତାଙ୍କ କର୍ତ୍ତୃକ ଯେକୌଣସି ନୂତନ ତଥ୍ୟର ଉପସ୍ଥାପନା ପାଇଁ ସେ ଚାହୁଁଥିଲେ ଅନ୍ୟ ବରିଷ୍ଠ ବୈଜ୍ଞାନିକଙ୍କର ସ୍ୱୀକୃତି ସୂଚକ ମୋହର । "ହାର୍ଭାର୍ଡ଼ ମେଡ଼ିକାଲ୍ ସ୍କୁଲ ଜୈବରସାୟନ ବିଭାଗରେ 'ସାଇରସ୍ ଫିସ୍କେ'ଙ୍କ ଅଧୀନରେ କାମ କରୁଥିଲାବେଳେ ତାଙ୍କର ମୌଳିକ ଗବେଷଣାଲବ୍ଧ ଫଳାଫଳର ଶ୍ରେୟଃ ପ୍ରାୟତଃ ସବୁବେଳେ ସେ ଫିସ୍କେଙ୍କୁ ସମର୍ପଣ କରୁଥିଲେ ।" ଏ ମତାମତ ଦେଇଛନ୍ତି ହାର୍ଭାର୍ଡ଼ରେ ତତ୍କାଳୀନ କାର୍ଯ୍ୟରତ ଏକାଧିକ ବିଜ୍ଞାନ ଅଧ୍ୟାପକ । ବିଶେଷତଃ ଫସ୍‌ଫରସ୍ ନିର୍ଣ୍ଣୟନ ପଦ୍ଧତି ଏବଂ ପେଶୀତନ୍ତୁରେ 'କ୍ରିଏଟିନ୍ ଫସ୍‌ଫେଟ୍' ଓ ଏ.ଟି.ପି. ଅବସ୍ଥିତିର ସନ୍ଧାନ ପ୍ରକ୍ରିୟା ମୁଖ୍ୟତଃ ସୁବ୍‌ବା ରୋ'ଙ୍କ ଗବେଷଣାଲବ୍ଧ ଫଳଶ୍ରୁତି । କିନ୍ତୁ ଫିସ୍କେଙ୍କ ପ୍ରତି ବିନୟାବନତ ମନୋଭାବ ଯୋଗୁଁ ନିଜ ଆଡୁ ସବୁବେଳେ ସୁବ୍‌ବାରୋ କହୁଥିଲେ - 'ଏ ଗବେଷଣାରେ ମୁଁ କେବଳ ନିମିତ୍ତ ମାତ୍ର; ମୋର ଭୂମିକା ଗୌଣ । କାରଣ ଫିସ୍କେଙ୍କ ନିର୍ଦ୍ଦେଶମତେ ମୁଁ କାମ କରିଛି । ହାତର ଚାତୁରୀ ମୋର । ହେଲେ 'ମଗଜ ମନ୍ଥନ' ତାଙ୍କର ।' କୁହାଯାଏ, ତାଙ୍କର ଏ ପ୍ରକାର ସ୍ୱେଚ୍ଛାକୃତ ଉଦ୍‌ଘୋଷଣ କୁଆଡ଼େ ଫିସ୍କେଙ୍କୁ ହାର୍ଭାର୍ଡ଼ର ପ୍ରଫେସର ପଦମଣ୍ଡନ କରିବାରେ ସହାୟକ ହୋଇଥିଲା । ପେଶୀର ପ୍ରାଣପିଣ୍ଡ କ୍ରିଏଟିନ୍ ଫସ୍‌ଫେଟ୍ ଓ ଏ.ଟି.ପି.ର ଆବିଷ୍କର୍ତ୍ତା ଭାବେ ସୁବ୍‌ବା ରୋ'ଙ୍କ ତୁଳନାରେ ଫିସ୍କେଙ୍କୁ ଅଧିକ ଖ୍ୟାତି ଓ ସମ୍ମାନ ମିଳିଥିଲା । ତା'ଛଡ଼ା ଠିକ୍ ସେଇ ସମୟରେ ପ୍ରଖ୍ୟାତ ଜର୍ମାନ୍ ବୈଜ୍ଞାନିକ କାର୍ଲ ଲୋହମାନ୍ (Karl Lohman) ମଧ୍ୟ ସ୍ୱତନ୍ତ୍ର ଭାବେ ପେଶୀତନ୍ତୁରେ ଏ ଦୁଇ ରାସାୟନିକ ପଦାର୍ଥର ଅବସ୍ଥିତି ଓ ଅବଦାନ ବିଷୟରେ ବିସ୍ତୃତ ବିବରଣୀ ପ୍ରକାଶ କଲେ । ଫଳତଃ

ବରିଷ୍ଠତା ତଥା ପରିଚିତି ଦୃଷ୍ଟିରୁ ଏ ପ୍ରମୁଖ ଆବିଷ୍କାରର ଶ୍ରେୟଃ 'ଲୋହମାନ୍' ଓ 'ଫିସ୍କେ'ଙ୍କ ନାମରେ ଗଲା । ସୁବ୍ବା ରୋ' କେବଳ ନେପଥ୍ୟନାୟକ ହୋଇ ରହିଗଲେ । ତା'ଛଡ଼ା ଫିସ୍କେ ହାର୍ଭାର୍ଡ୍ ପ୍ରଫେସର ପଦମଣ୍ଡନ କଲାପରେ କ୍ରିଏଟିନ୍ ଫସ୍‌ଫେଟ୍ ଓ ଏ.ଟି.ପି. ଉପରେ ଅଧିକ ଗବେଷଣା ପାଇଁ ଆଉ ଆଗ୍ରହ ପ୍ରକାଶ କଲେ ନାହିଁ । ଫଳତଃ ସୁବ୍ବା ରୋ'ଙ୍କ ଗବେଷଣାର ମୋଡ଼ ବଦଳି ଗଲା । ସମୟକ୍ରମେ ପ୍ରାୟ ୧୦ ବର୍ଷରୁ କମ୍ ସମୟ ମଧ୍ୟରେ ଏ.ଟି.ପି. ଅଣୁର ରାସାୟନିକ ଗଠନ ବିନ୍ୟାସ, କୃତ୍ରିମ ସଂଶ୍ଳେଷଣ ପଦ୍ଧତି ତଥା ତନ୍ତୁକୋଷରେ ଏହାର କ୍ରିୟା-ଅଭିକ୍ରିୟା ବିଷୟରେ ଚମକପ୍ରଦ ତଥ୍ୟମାନ ଉନ୍ମୋଚିତ ହେବାକୁ ଲାଗିଲା । ଶେଷରେ ଜଣାଗଲା ଯେ, ଜୀବୀର ସର୍ବବିଧ ଜୈବିକ ଶକ୍ତିର ମୂଳାଧାର ହେଉଛି ଏହି ଏ.ଟି.ପି. ଅଣୁ । ଏ ସଂକ୍ରାନ୍ତୀୟ ତଥ୍ୟ ଉନ୍ମୋଚନ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଫ୍ରିଜ୍ ଲିପ୍‌ମାନ୍ (Fritz Lipmann), ହର୍‌ମାନ୍ କାକାର୍ (Herman Kalckar) ଓ ଆଲେକ୍‌ଜାଣ୍ଡାର୍ ଟଡ୍ (Alexander Todd) ଆଦି ବୈଜ୍ଞାନିକ । ଏ ସଂକ୍ରାନ୍ତୀୟ ସାମଗ୍ରିକ ଗବେଷଣା ପାଇଁ ପରବର୍ତ୍ତୀ କାଳରେ ଲିପ୍‌ମାନ୍ ଓ ଟଡ୍‌ଙ୍କୁ ନୋବେଲ ପୁରସ୍କାର ମଧ୍ୟ ମିଳିଥିଲା । କିନ୍ତୁ ସୁବ୍ବା ରୋ' ସେତେବେଳକୁ ଦିବଂଗତ ହୋଇ ସାରିଥିଲେ ।

ସୁବ୍ବା ରୋ'ଙ୍କ ଅକାଳ ମୃତ୍ୟୁ (ଜନ୍ମ ୧୨ ଜାନୁଆରୀ ୧୮୯୫, ମୃତ୍ୟୁ ୮ ଅଗଷ୍ଟ ୧୯୪୮) ପରେ ବିଜ୍ଞାନ ଜଗତରେ ସାମୟିକ ଚାପା ଗୁଞ୍ଜରଣ ଶୁଣା ଯାଇଥିଲା । 'ତାଙ୍କୁ କ'ଣ ନୋବେଲ୍ ପୁରସ୍କାର ଦିଆଯାଇ ପାରିନଥାନ୍ତା ?' ମେଡ଼ିସିନ୍ / ଶରୀର ତତ୍ତ୍ୱ ପାଇଁ ନୋବେଲ୍ ପ୍ରଦାନ କରୁଥିବା ଷ୍ଟକ୍‌ହୋମ୍‌ସ୍ଥ କାରୋଲିନ୍‌ସ୍କା ପ୍ରତିଷ୍ଠାନ (Karolinska Institute) ନିଜ ପ୍ରଦର୍ଶନୀ କକ୍ଷରେ ସୁବ୍ବା ରୋ'ଙ୍କର ଏକ ଆଲୋକଚିତ୍ର ସ୍ଥାନିତ କରିଥିଲେ । ବିଂଶ ଶତାବ୍ଦୀର ପଚାଶ ଦଶକରେ ତାହା ଦେଖି ଅନ୍ୟ ନୋବେଲ୍ ବିଜେତାମାନେ ଏ ପ୍ରସଙ୍ଗ ଉତ୍‌ଥାପନ କରୁଥିଲେ । ଏକଦା ତାଙ୍କର ସହକର୍ମୀ ଥିବା ଜର୍ଜ ହଚିଙ୍ଗସ୍ (ଯେ କି ଜେର୍‌ଟ୍ରୁଡ୍ ଇଲିଅନ୍ ଓ ଜେମ୍‌ସ ବ୍ଲାକ୍‌ଙ୍କ ସହ ୧୯୮୮ ମସିହାରେ ମେଡ଼ିସିନ୍ ନୋବେଲ୍ ବିଜେତା ହୋଇଥିଲେ) ପ୍ରସଙ୍ଗ କ୍ରମେ ଥରେ କହିପକାଇ ଥିଲେ - ''ପ୍ରଥମେ ସୁବ୍ବା ରୋ'ଙ୍କ ଆବିଷ୍କୃତ ହୋଇଥିବା କେତେକ ନିଉକ୍ଲିଓଟାଇଡ୍ କେବଳ ଫିସ୍କେଙ୍କ ଅବହେଳା ଯୋଗୁଁ ପରବର୍ତ୍ତୀ କାଳରେ ଅନ୍ୟମାନଙ୍କ ଦ୍ୱାରା ପୁନରାବିଷ୍କୃତ ହୋଇ ଚମକ ସୃଷ୍ଟି କରିଥିଲା । ଯଦି ଫିସ୍କେ ଅଧସ୍ତନ ସୁବ୍ବା ରୋ'ଙ୍କ କୃତିକୁ ଯଥା ସମୟରେ ପ୍ରକାଶିତ କରିବାର ସୁଯୋଗ ତାଙ୍କୁ ଦେଇଥାଆନ୍ତେ...!!!''

ବହୁ ପ୍ରତିକୂଳ ପରିବେଶ, ଭାଗ୍ୟର ବିଡ଼ମ୍ବନା ତଥା ସୀମିତ ଜୀବନକାଳ ଯୋଗୁଁ ଡା. ସୁବ୍ବା ରୋ' ହୁଏତ ଯଥାଯୋଗ୍ୟ ଜାତୀୟ ଓ ଆନ୍ତର୍ଜାତିକ ସମ୍ମାନ ସ୍ୱୀକୃତି ପାଇପାରି ନାହାନ୍ତି । ଏପରିକି ଆମ ଦେଶରେ ମଧ ତାଙ୍କ ଜନ୍ମ ଶତବାର୍ଷିକୀରେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ଡାକଟିକେଟ୍ ପ୍ରଚଳନ କରିବା ବ୍ୟତୀତ ଅନ୍ୟ କିଛି ହୋଇ ନାହିଁ । ଆମର ଶ୍ରେଷ୍ଠ ଜାତୀୟ ସମ୍ମାନ 'ଭାରତରତ୍ନ' ମରଣୋତ୍ତର କାଳରେ ଏକାଧିକ ବ୍ୟକ୍ତିବିଶେଷଙ୍କୁ ପ୍ରଦାନ କରାଯାଇଥିଲାବେଳେ ସୁବ୍ବା ରୋ'ଙ୍କ କ୍ଷେତ୍ରରେ ଅନ୍ତତଃ ତାହା ମଧ କାହିଁକି କରାନଗଲା, ଏହା ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ । କିନ୍ତୁ ଏହା ଧ୍ରୁବ ସତ୍ୟ ଯେ, ଜୈବ ରସାୟନ ଓ ଭେଷଜ ବିଜ୍ଞାନ ପାଇଁ ତାଙ୍କର ଅନନ୍ୟ ଅବଦାନ ତାଙ୍କୁ କାଳଜୟୀ କରି ରଖିଥିବ । କାରଣ ତାଙ୍କ ଉଦ୍ଭାବିତ ଭେଷଜୀୟ ଉତ୍ପାଦମାନଙ୍କ ପାଇଁ ସାରା ବିଶ୍ୱର କୋଟି କୋଟି ଲୋକ ପ୍ରତିଦିନ ତାଙ୍କୁ ସ୍ମରଣ କରୁଥିବେ ।



# ଯୋଗେନ୍ଦ୍ର ଚନ୍ଦ୍ର ବର୍ଦ୍ଧନ

ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ଜୈବ ରସାୟନରେ ଗବେଷଣା କରି ଯଦି କେହି ଭାରତର ମୁଖ ଉଜ୍ଜ୍ୱଳ କରି ପାରିଛନ୍ତି ଓ ଯାହାଙ୍କର ଗବେଷଣା ଯୋଗୁଁ ଭାରତ ଆଜି ପୃଥିବୀର ବହୁ ଦେଶରେ ପରିଚିତ ହୋଇପାରିଛି, ତେବେ ସେ ହେଉଛନ୍ତି ଭାରତର ଏହି ଅମର ସନ୍ତାନ ୰ଅଧ୍ୟାପକ ଡଃ ଯୋଗେନ୍ଦ୍ର ଚନ୍ଦ୍ର ବର୍ଦ୍ଧନ ।

୧୯୪୫ ମସିହା । ଦ୍ୱିତୀୟ ମହାସମରର ଶେଷ ପର୍ଯ୍ୟାୟର ପରିସମାପ୍ତି ହେବା ପରେ ଲେଖକ ରେଭେନ୍‌ସା କଲେଜରୁ ବି.ଏସ୍‌ସି. ପାଶ୍ କରି କଲିକତା ବିଶ୍ୱବିଦ୍ୟାଳୟରେ ଏମ୍.ଏସ୍‌ସି. ପଢ଼ିବାପାଇଁ ଯାଇଥିଲେ । କଲିକତା ବିଶ୍ୱବିଦ୍ୟାଳୟ ତଥା ପ୍ରେସିଡେନ୍ସି କଲେଜର ଖ୍ୟାତି ସେତେବେଳେ ସାରା ଭାରତରେ ଅଦ୍ୱିତୀୟ । କଲିକତା ବିଶ୍ୱବିଦ୍ୟାଳୟର ଏମ. ଏସ୍‌ସି. ଛାତ୍ରମାନଙ୍କ ମଧ୍ୟରୁ ଅଧେ ପଢ଼ନ୍ତି ଏହି ପ୍ରେସିଡେନ୍‌ସି କଲେଜରେ, ଆଉଅଧେ ପଢ଼ନ୍ତି ୟୁନିଭରସିଟି ସାଇନ୍‌ସ କଲେଜରେ । ସପ୍ତାହରେ ତିନିଦିନ ପ୍ରେସିଡେନ୍‌ସି କଲେଜରେ କ୍ଲାସ ହୁଏ ଓ ଆଉ ତିନିଦିନ ଇଉନିଭରସିଟି କଲେଜରେ କ୍ଲାସ ହୁଏ । ଉଭୟ କଲେଜର ପିଲାଏ ସାଥୀହୋଇ ତିନିଦିନ ଲେଖାଏଁ ଏହି ଦୁଇଟି କଲେଜରେ ପଢ଼ନ୍ତି । ନାମ ଲେଖାଇ ସାରିବା ପରେ ଦିନେ ଲେଖକ ଇଉନିଭରସିଟି ସାଇନ୍‌ସ କଲେଜକୁ ଗଲେ; ସେଠାରେ ସ୍ୱନାମଧନ୍ୟ ଅଧ୍ୟାପକମାନଙ୍କୁ ସାକ୍ଷାତ କରିବା ଥାଏ ତାଙ୍କର ଉଦ୍ଦେଶ୍ୟ । ବିଶ୍ୱବିଦ୍ୟାଳୟର ସୁପ୍ରସିଦ୍ଧ ବୈଜ୍ଞାନିକ ବିଶ୍ୱବିଖ୍ୟାତ ଡକ୍ଟର ଜେ.ସି. ବର୍ଦ୍ଧନଙ୍କୁ ଭେଟିବାପାଇଁ ସେଦିନ ତାଙ୍କ ଗବେଷଣାଗାରରେ ଯାଇ ପହଞ୍ଚିଗଲେ । ଡକ୍ଟର ବର୍ଦ୍ଧନ ବିଶ୍ୱବିଦ୍ୟାଳୟର ସେତେବେଳେ ଉଦୀୟମାନ ବୈଜ୍ଞାନିକ । ତାଙ୍କ ସହିତ ଯେତେବେଳେ ଭେଟ ହୁଏ, ତାଙ୍କର ସେ ଯେଉଁ ହାର୍ଦ୍ଦିକ ସ୍ୱାଗତ ତାହା କେବେ ଭୁଲିବାର ନୁହେଁ ।

ଓଡିଶାର ଛାତ୍ରଭାବରେ ତାଙ୍କର ଲେଖକଙ୍କ ପ୍ରତି ଶ୍ରଦ୍ଧା ଅପରିସୀମ। ଲେଖକଙ୍କୁ ରେଭେନସା କଲେଜର ଛାତ୍ର ବୋଲି ଜାଣି ସାରିବା ପରେ ହଠାତ୍ ପଚାରିଲେ, "ତୁମେ ଅଧ୍ୟାପକ ଲୋକନାଥ ମିଶ୍ରଙ୍କୁ ଜାଣ ?"

ଲେଖକ ଉତ୍ତର ଦେଲେ, "ମୁଁ ହେଉଛି ତାଙ୍କ ଛାତ୍ର । ତାଙ୍କରି ଠାରୁ ଜୈବରସାୟନ ପଢା ଆରମ୍ଭ କରି ଆସିଛି ଆପଣମାନଙ୍କ ବିଶ୍ୱବିଦ୍ୟାଳୟକୁ ରସାୟନ ବିଜ୍ଞାନରେ ଉଚ୍ଚତର ଶିକ୍ଷା ପାଇବା ପାଇଁ ।"

ଅଧ୍ୟାପକ ଲୋକନାଥ ମିଶ୍ରଙ୍କ ଛାତ୍ର ବୋଲି ଜାଣି ସେ ଆହୁରି ଖୁସି ହୋଇଗଲେ । ଲେଖକଙ୍କୁ ପଚାରିଲେ, " ତୁମେ ଜାଣ; ଅଧ୍ୟାପକ ଲୋକନାଥ ମୋର ସହପାଠୀ । ଆମେ ଦୁହେଁ ଏକା ଶ୍ରେଣୀରେ ଏହି ବିଶ୍ୱବିଦ୍ୟାଳୟରେ ଏମ୍.ଏସ୍‌ସି. ପଢୁଥିଲୁ । ଏକା ବର୍ଷ ଆମେ ଏମ୍.ଏସ୍‌ସି. ପାଶ୍ କଲୁ ଏହି ବିଶ୍ୱବିଦ୍ୟାଳୟରୁ । ସେ ଗଲେ ଓଡ଼ିଶା, ଆଉ ମୁଁ ରହିଲି ଏଠି । ଛାତ୍ର ଭାବରେ ସେ ଥିଲେ ଅତି ମେଧାବୀ ।

ବଡ ଖୁସି ଲଗିଲା ତାଙ୍କ କଥା ଶୁଣି । ଅଧ୍ୟାପକ ଲୋକନାଥ ମିଶ୍ରଙ୍କ ପ୍ରତି ମୋର ଯେଉଁ ଭକ୍ତି ଥିଲା, ତାହା ବହୁଗୁଣରେ ବଢିଗଲା ଡକ୍ଟର ବର୍ଦ୍ଧନଙ୍କଠାରୁ ତାଙ୍କ ଗୁଣାବଳୀ ଓ ପ୍ରଶସ୍ତିଶୁଣି । ପରେ କେତେଥର ସେ କହିଛନ୍ତି ଯେ, ସେ ଲୋକନାଥ ମିଶ୍ରଙ୍କ ଖାଲି ସହପାଠୀ ନୁହନ୍ତି, ତାଙ୍କ ସହିତ ଏକତ୍ର ସେ ଗବେଷଣା ମଧ୍ୟ କରିଛନ୍ତି । ସେ ଯେଉଁଦିନ ପ୍ରକାଶ କଲେ ଯେ ଆମର ପୂଜ୍ୟ ଅଧ୍ୟାପକ ଲୋକନାଥ ମିଶ୍ରଙ୍କ ସହିତ ତାଙ୍କର ସର୍ବ ପ୍ରଥମ ଗବେଷଣା ପ୍ରବନ୍ଧ ୧ ୯ ୨ ୩ ମସିହାରେ ଆମେରିକାର ସୁପ୍ରସିଦ୍ଧ ରସାୟନ ପତ୍ରିକା ଆମେରିକାନ୍ କେମିକାଲ ସୋସାଇଟି ଜର୍ଣ୍ଣାଲରେ ପ୍ରକାଶ ପାଇଥିଲା, ସେଦିନ ଲେଖକଙ୍କ ବିସ୍ମୟର ସୀମା ରହିଲାନି । ଅଧ୍ୟାପକ ଲୋକନାଥ ମିଶ୍ର ଓ ଯୋଗେନ୍ଦ୍ର ଚନ୍ଦ୍ର ବର୍ଦ୍ଧନ ସେତେବେଳେ ଭାରତର ସୁବିଖ୍ୟାତ ଜୈବ ରସାୟନବିଦ୍ ଅଧ୍ୟାପକ ରସିକଲାଲ ଦତ୍ତଙ୍କ ଅଧୀନରେ ଗବେଷଣା କରୁଥିଲେ । ବଡ ଇଛା ହେଲା ସେହି ଗବେଷଣା ପ୍ରବନ୍ଧ ଦେଖିବାପାଇଁ । ଲାଇବ୍ରେରୀକୁ ଯାଇ ସେହି ମସିହାର ଆମେରିକାନ୍ ରାସାୟନିକ ସମିତିର ପତ୍ରିକା ଦେଖିଲି । ବଡ ଚମତ୍କାର ସେ ଗବେଷଣାମୂଳକ ପ୍ରବନ୍ଧଟି । ଅଧ୍ୟାପକ ଲୋକନାଥ ମିଶ୍ର ଜୀବନର ପ୍ରଥମ ଭାଗରେ ଏତେ ଉଚ୍ଚକୋଟୀର ଗବେଷଣା କରିଥିଲେ, ଏହା ଦେଖି ଲେଖକଙ୍କର ତାଙ୍କପ୍ରତି ସମ୍ମାନ ଓ ଶ୍ରଦ୍ଧା ବହୁଗୁଣ ବଢିଗଲା । ବଡ ଦୁଃଖ ହେଲା, କଲିକତା ନ ଆସିଲା ପର୍ଯ୍ୟନ୍ତ ଅଧ୍ୟାପକ ମିଶ୍ରଙ୍କ ଏହି ବିରାଟ ବୈଜ୍ଞାନିକ ଅବଦାନ କଥା ଓଡ଼ିଶାରେ କେହି ଜାଣି ନଥିଲେ ।

କିନ୍ତୁ ଅଧ୍ୟାପକ ବର୍ଦ୍ଧନଙ୍କ ଓଡ଼ିଶାପ୍ରତି ବିଶେଷ ଶ୍ରଦ୍ଧା ଓ ଓଡିଆ ଛାତ୍ରମାନଙ୍କ ପ୍ରତି ଅଶେଷ ଆକର୍ଷଣ ଥିବାରୁ ଓଡ଼ିଶାର ଏକ ହିତାକାଂକ୍ଷୀ ଭାବରେ ସେ ସର୍ବଦା ପରିଚିତ ଥିଲେ । କଲିକତାର ବନ୍ଧୁ ବଙ୍ଗାଳୀ ଅଧ୍ୟାପକଙ୍କର ସେ ସମୟରେ ଓଡ଼ିଶା ପ୍ରତି ବିଶେଷ ଶ୍ରଦ୍ଧା, ଅନୁରାଗ ବା ଦୃଷ୍ଟି ନ ଥିଲାବେଳେ ଓଡ଼ିଶା ପ୍ରତି ଏହି ବୈଜ୍ଞାନିକଙ୍କ ଶ୍ରଦ୍ଧା ତାଙ୍କ ବିରାଟ ବ୍ୟକ୍ତିତ୍ୱର କମ୍ ପରିଚୟ ଦିଏ ନାହିଁ ।

ଯୋଗେନ୍ଦ୍ର ଚନ୍ଦ୍ର ୧୮୯୬ ମସିହା ଅକ୍ଟୋବରମାସ ୧୫ ତାରିଖ ଦିନ ଅବିଭକ୍ତ ବଙ୍ଗ ପ୍ରଦେଶର ଢାକା ଜିଲ୍ଲା, ବର୍ତ୍ତମାନ ବଙ୍ଗଳାଦେଶର ସ୍ୱର୍ଣ୍ଣପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିତା ହେଉଛନ୍ତି ଆନନ୍ଦଚନ୍ଦ୍ର ବର୍ଦ୍ଧନ ଓ ମାତା ଜ୍ଞାନଦା ଦେବୀ । ସେ ତାଙ୍କର ପ୍ରାଥମିକ ଶିକ୍ଷାଲାଭ କରିଥିଲେ ଜଳପାଇଗୁଡ଼ିଠାରେ । ୧୯୧୩ ମସିହାରେ ସେ ଜଳପାଇଗୁଡି ଜିଲାସ୍କୁଲରୁ ପ୍ରଥମ ଶ୍ରେଣୀରେ ମେଟ୍ରିକୁଲେଶନ୍ ପାଶ୍ କରି ବୃତ୍ତି ପାଇଥିଲେ । ତତ୍‌ପରେ ସେ କଲିକତାର ସିଟି କଲେଜରୁ ଆଇ.ଏସ୍‌ସି. ପାଶ୍ କଲେ । ତତ୍‌ପରେ ସେ ବି.ଏସ୍‌ସି. ପଢିଲେ କଲିକତାର ପ୍ରେସିଡେନ୍‌ସି କଲେଜରେ । ସେ ସେଠାରୁ ୧୯୧୭ ମସିହାରେ ରସାୟନ ବିଜ୍ଞାନରେ ଅନର୍ସ ସହିତ ବି.ଏସ୍‌ସି. ପାଶ୍ କଲେ । ସେହି ବର୍ଷ ସେ ସାରା ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କଲେ । ଭାରତର ସ୍ୱନାମଧନ୍ୟ ରସାୟନବିତ୍ ଆଚାର୍ଯ୍ୟ ପ୍ରଫୁଲଚନ୍ଦ୍ର ରାୟଙ୍କର ସେ ଥିଲେ ଜନୈକ ପ୍ରିୟ ଶିଷ୍ୟ ।

ଯୁବକ ଅବସ୍ଥାରେ ଯୋଗେନ୍ଦ୍ର ଚନ୍ଦ୍ର ଯେତେବେଳେ ପ୍ରେସିଡେନ୍‌ସି କଲେଜରେ ପଢୁଥିଲେ ସେତେବେଳେ ସେ ଗବେଷଣାପ୍ରତି ଅତ୍ୟଧିକ ଅନୁରାଗ ପ୍ରଦର୍ଶନ କରିଥିଲେ । ପ୍ରେସିଡେନ୍‌ସି କଲେଜର ତତ୍‌କାଳୀନ ଜୈବ ରସାୟନ ଅଧ୍ୟାପକ ରସିକଲାଲ ଦତ୍ତଙ୍କ ଅଧୀନରେ ସେ ଗବେଷଣା ଆରମ୍ଭ କଲେ । ଓଡିଶାର ବରେଣ୍ୟ ୰ଅଧ୍ୟାପକ ଲୋକନାଥ ମିଶ୍ର ସେତେବେଳେ ତାଙ୍କର ସହକର୍ମୀ ଭାବରେ ରସିକଲାଲ ଦତ୍ତଙ୍କ ଅଧୀନରେ ଗବେଷଣାରେ ଯୋଗ ଦେଇଥିଲେ । ନାଇଟ୍ରୋ-ମେଟା କ୍ରେସଲର ବିସ୍ଫୋରଣ ଉତ୍ତାପ ଉପରେ ସେମାନଙ୍କ ଗବେଷଣା ସେତେବେଳେ ଖୁବ୍ ଉଚ୍ଚକୋଟୀର ହୋଇଥିଲା ।

ତତ୍‌ପରେ ୧୯୨୦ ମସିହାରେ ନୂଆ ହୋଇ ପ୍ରତିଷ୍ଠିତ ହୋଇଥିବା ଇଉନିଭରସିଟି ସାଇନ୍‌ସ କଲେଜରେ ଅଧ୍ୟାପକ ପ୍ରଫୁଲଚନ୍ଦ୍ର ମିତ୍ରଙ୍କ ଗବେଷଣା ଛାତ୍ର ଭାବରେ ସେ ଯୋଗ ଦେଲେ । ସେଠାରେ ଚାରିବର୍ଷ ଗବେଷଣା କରି ୧୯୨୪ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ରସାୟନ ବିଜ୍ଞାନରେ ଡି. ଏସ୍‌ସି. ଉପାଧି ଅର୍ଜନ କଲେ । ତାଙ୍କର

ଗବେଷଣା ଏତେ ଉଚ୍ଚକୋଟୀର ହୋଇଥିଲା ଯେ ସେହି ଗବେଷଣା ଲବ୍ଧ ଫଳକୁ ବ୍ୟବହାର କରି ପରେ ଭିଟାମିନ ବି- କମ୍ପ୍ଲେକ୍ସ ଭିତରୁ ଗୋଟିଏ, ଭିଟାମିନ ବି -୬ ସଂଶ୍ଳେଷିତ ହେଲା । ତାଙ୍କର ଉଚ୍ଚକୋଟୀର ଗବେଷଣା ପାଇଁ ସେ ପ୍ରେମଚାନ୍ଦ ରାୟଚାନ୍ଦ ଷ୍ଟୁଡେଣ୍ଟସିପ୍ ସମ୍ମାନ 'P.R.S.' ପାଇଲେ ଓ ସେଥିସହ ମୋଆତ୍ ପଦକ। ୧୯୨୩ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଗବେଷକ ଭାବରେ ନାଗାର୍ଜ୍ଜୁନ ପଦକ ପାଇଲେ । ସେ ହେଉଛନ୍ତି କଲିକତା ବିଶ୍ୱବିଦ୍ୟାଳୟରେ ସର୍ବପ୍ରଥମ ନାଗାର୍ଜ୍ଜୁନ ପଦକପ୍ରାପ୍ତ ଗବେଷକ ।

୧୯୨୫ ମସିହାରେ ସେ ପାଲିତ୍ ବୃତ୍ତି ପାଇ ବିଦେଶଯାତ୍ରା କଲେ । ସେ ଯାଇ ଲଣ୍ଡନସ୍ଥିତ ଇଂଲଣ୍ଡର ସୁବିଖ୍ୟାତ୍ ଇମ୍ପେରିଆଲ କଲେଜରେ ଯୋଗଦେଲେ ପୃଥିବୀ ବିଖ୍ୟାତ ଅଧ୍ୟାପକ ଥର୍ପଙ୍କ ଛାତ୍ର ଭାବରେ । ଏହିଠାରେ ସେ ତାଙ୍କର ସର୍ବପ୍ରଥମ ବିଶ୍ୱବିଖ୍ୟାତ ବାଲବିଥାନୋ ଏସିଡ୍ ସଂଶ୍ଳେଷଣ କରି ପ୍ରସିଦ୍ଧି ଅର୍ଜ୍ଜନ କଲେ । ତାଙ୍କର ଏହି ଗବେଷଣା ଏବେ ବି ଏମ୍.ଏସ୍‌ସି. ଛାତ୍ରମାନଙ୍କୁ ପଢାଯାଉଛି । ତାଙ୍କର ଏହି ଗବେଷଣା ତାଙ୍କୁ ଏକ ଦକ୍ଷ ରସାୟନବିତ୍ ଭାବରେ ପରିଚିତ କରାଇଲା । ସେ ସେଥିଯୋଗୁ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଡି.ଏସ୍‌ସି. ଡିଗ୍ରୀ ହାସଲ କଲେ । ଏହାପରେ ସେ ଲଣ୍ଡନରୁ ଆସି ସ୍ୱିଜରଲାଣ୍ଡରେ ବୈଜ୍ଞାନିକ ରୁଜିସ୍କାଙ୍କ ସହିତ କିଛିଦିନ ଗବେଷଣା କଲେ । ବୈଜ୍ଞାନିକ ରୁଜିସ୍କା ପରେ ନୋବେଲ ପୁରସ୍କାରପ୍ରାପ୍ତ ହୋଇଥିଲେ ।

ପାଞ୍ଚବର୍ଷ ପରେ, ୧୯୩୦ ମସିହାରେ ଯୋଗେନ୍ଦ୍ର ଚନ୍ଦ୍ର ଭାରତକୁ ଫେରିଆସିଲେ । କଲିକତାସ୍ଥ ପୋଷ୍ଟଗ୍ରାଜୁଏଟ୍ ସାଇନ୍‌ସ କଲେଜରେ ଏକ ଗବେଷକ ଭାବରେ ନିଯୁକ୍ତି ପାଇଲେ । ତାଙ୍କର ଏକ ଗବେଷକ ଛାତ୍ରଭାବରେ ଏହି ସମୟରେ ଯୋଗଦେଲେ ସୁରେଶ ଚନ୍ଦ୍ର ସେନଗୁପ୍ତ । ତାଙ୍କର ସହଯୋଗରେ ସେ ଆବିଷ୍କାର କଲେ ସୁବିଖ୍ୟାତ " ବର୍ଦ୍ଧନ-ସେନଗୁପ୍ତ ସଂଶ୍ଳେଷଣ" (Bardhan - Sengupta Synthesis) ଯାହା ପାଇଁକି ସେ ଆଜି ସାରା ପୃଥିବୀରେ ଅମର ହୋଇରହିଛନ୍ତି ।

୧୯୩୫ ମସିହାରେ ସେ ଦ୍ୱିତୀୟଥର ପାଇଁ ପୁଣି ବିଦେଶ ଗଲେ । ସେ ଏଥର ଯାଇ ଗବେଷଣା କରିବା ପାଇଁ ପହଞ୍ଚିଲେ ଅକ୍‌ସଫୋର୍ଡ୍ ବିଶ୍ୱବିଦ୍ୟାଳୟରେ, ଅଧ୍ୟାପକ ପାର୍କିନ ଜୁନିୟରଙ୍କଠାରେ । ବର୍ଦ୍ଧନ ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଯୋଗଦେବାର ଅଳ୍ପଦିନ ପରେ ପାର୍କିନ ଅସୁସ୍ଥ ହେଲେ ଓ ପରବର୍ଷ ମୃତ୍ୟୁମୁଖରେ ପଡ଼ିଲେ । ତେଣୁ ସେ ସେଠାରୁ ଆସି ଯୋଗଦେଲେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥର୍ପ ଓ ଅଧ୍ୟାପକ ରୋଜେନ୍‌ହାଇମ୍‌ଙ୍କ ସହକର୍ମୀ ଭାବରେ ।

ଡ. ବର୍ଦ୍ଧନ ୧୯୩୭ ମସିହାରେ ଭାରତକୁ ଫେରିଆସି କଲିକତା ବିଶ୍ୱବିଦ୍ୟାଳୟରେ ରସାୟନ ବିଭାଗରେ ଲେକଚରର୍ ଭାବରେ ଯୋଗ ଦେଲେ । ସେ ସେହିଦିନଠାରୁ ଯୁବ ବୈଜ୍ଞାନିକମାନଙ୍କୁ ଗବେଷଣା ଦିଗରେ ସାହାଯ୍ୟ କରିବାପାଇଁ ତାଙ୍କ ଗବେଷଣାଗାର ଉନ୍ମୁକ୍ତ କରିଦେଲେ। ୧୯୪୩ମସିହାରେ ଡ: ବର୍ଦ୍ଧନ ରିଡର ପଦକୁ ଓ ୧୯୪୬ ମସିହାରେ ପ୍ରଫେସର ପଦକୁ ଉନ୍ନୀତ ହେଲେ । ୧୯୬୦ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରେ ରସାୟନ ବିଭାଗର ମୁଖ୍ୟ ଅଧ୍ୟାପକ ହେଲେ । ୧୯୫୫ ସେ ତୃତୀୟଥର ପାଇଁ ଇଂଲଣ୍ଡ ଓ ୟୁରୋପ ଭ୍ରମଣରେ ଯାଇ ଜୁରିଖରେ ନୋବେଲ ପୁରସ୍କାର ବିଜେତା ରୁଜିସ୍କାଙ୍କ ଗବେଷଣାଗାରରେ କିଛିଦିନ କଟାଇଥିଲେ । ଡ: ବର୍ଦ୍ଧନଙ୍କ ଗବେଷଣା କାମ ଅତି ଉଚ୍ଚ ଧରଣର। ହରମୋନ୍‌ସଠାରୁ ଆରମ୍ଭକରି ଟାରପିନଏଡ୍ ପର୍ଯ୍ୟନ୍ତ ବହୁ ବିଭାଗରେ ତାଙ୍କ ଗବେଷଣା ସୁଖ୍ୟାତି ଅର୍ଜ୍ଜନ କରିଛି ।

ତାଙ୍କ ଗବେଷଣାତ୍ମକ ପ୍ରବନ୍ଧ, ସନ୍ଦର୍ଭ ଆଦି ସେ ପାଶ୍ଚାତ୍ୟ ଦେଶର ବୈଜ୍ଞାନିକ ପତ୍ରପତ୍ରିକାମାନଙ୍କରେ ସାଧାରଣତଃ ପ୍ରକାଶ କରନ୍ତି । ଲଣ୍ଡନର କେମିକାଲ ସୋସାଇଟି ପତ୍ରିକାରେ ତାଙ୍କର ଅଧିକାଂଶ ପ୍ରବନ୍ଧ ଦେଖିବାକୁ ମିଳେ । ତାଙ୍କଠାରୁ ଗବେଷଣାର ସର୍ବପ୍ରଥମ ଟ୍ରେନିଂ ପାଇ ବହୁ ଛାତ୍ରଛାତ୍ରୀ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ପ୍ରଧାନ ଅଧ୍ୟାପକଠାରୁ ଆରମ୍ଭ କରି ଗବେଷଣାଗାରର ଡିରେକ୍ଟର ପର୍ଯ୍ୟନ୍ତ କେତେ କ'ଣ ଯେ ହୋଇଥିଲେ, ତା'ର କଳନା ନାହିଁ । ଭାରତର ବହୁ ବିଶ୍ୱବିଦ୍ୟାଳୟରେ ତାଙ୍କ ଛାତ୍ରମାନେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରି ବସିଥିଲେ । ତାଙ୍କ ଅଧୀନରେ ଗବେଷଣା କରି ବିଂଶାଧିକ ଯୁବକ ଯୁବତୀ ଡି.ଏସ୍‌ସି., ପିଏଚ୍.ଡି ଆଦି ଉପାଧିରେ ଭୂଷିତ ହୋଇଥିଲେ ।

୧୯୬୧ ମସିହା ଅକ୍ଟୋବର ମାସରେ ୬୫ବର୍ଷ ବୟସରେ ସେ ବିଶ୍ୱବିଦ୍ୟାଳୟ ଚାକିରିରୁ ଅବସର ଗ୍ରହଣ କଲେ । ସେ ଅବସର ଗ୍ରହଣ କରିବା ସଙ୍ଗେ ସଙ୍ଗେ ଭାରତ ସରକାରଙ୍କ ଶିକ୍ଷା ଦପ୍ତରରୁ ଏକ ଉଚ୍ଚ ଚାକିରିରେ ନିଯୁକ୍ତି ପାଇ ଦିଲ୍ଲୀ ଚାଲିଗଲେ । ସେହି କାର୍ଯ୍ୟରେ ପ୍ରାୟ ତିନିବର୍ଷ ରହିବା ପରେ ୧୯୬୪ ମସିହା ଡିସେମ୍ବରମାସ ୨୩ ତାରିଖ ଦିନ ଦିଲ୍ଲୀସ୍ଥ ବାସଭବନରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ । ସେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ କାର୍ଯ୍ୟରେ ନିଯୁକ୍ତ ଥାଇ କର୍ମ ତତ୍ପର ଥିଲେ ।

ଡକ୍ଟର ଯୋଗେନ୍ଦ୍ର ଚନ୍ଦ୍ର ବର୍ଦ୍ଧନ ଖାଲି ଏକ ଆଦର୍ଶ ବୈଜ୍ଞାନିକ ନ ଥିଲେ, ଏକ ଆଦର୍ଶ ଶିକ୍ଷକ ମଧ୍ୟ । ତାଙ୍କ ଭଳି ଉଚ୍ଚ ଦକ୍ଷତା ସମ୍ପନ୍ନ ଶିକ୍ଷକ ଓ ଅଧ୍ୟାପକ ଆମ ଦେଶରେ ବିରଳ । ସରଳ ଜୀବନଯାପନ ଓ ଉଚ୍ଚଚିନ୍ତା ତାଙ୍କ ଜୀବନର ପ୍ରଧାନ ଆଦର୍ଶ

ଥିଲା । ଏତେବଡ ଉଚ୍ଚ ପଦବୀରେ ଥାଇ ମଧ୍ୟ ସେ ସରଳ ଜୀବନଯାପନକୁ ଖୁବ୍ ପସନ୍ଦ କରୁଥିଲେ । ସେ ଏତେ ସରଳ ଥିଲେ ଯେ ବିଳାସବ୍ୟସନକୁ ଖୁବ୍ ଘୃଣା କରୁଥିଲେ । ଖଣ୍ଡିଏ ସାଧାରଣ ଧୋତି, ପଞ୍ଜାବି ଓ ଚଦର ଏବଂ କେନ୍‌ଭାସ୍ ଜୋତା ଥିଲା ତାଙ୍କ ନିତ୍ୟବ୍ୟବହାର୍ଯ୍ୟ ପୋଷାକ । ବୈଜ୍ଞାନିକ ଗବେଷଣାକୁ ଜୀବନର ବ୍ରତ ବୋଲି ଧରିଥିବାରୁ ଆଚାର୍ଯ୍ୟ ପ୍ରଫୁଲଚନ୍ଦ୍ର ରାୟଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଅବିବାହିତ ରହିଥିଲେ । ସେ ଆଜୀବନ କୁମାର ଭାବରେ ଦିନ କଟାଇ ଦେଇଥିଲେ । ଦିନକ ପାଇଁ ବିବାହ ବା ସାଂସାରିକ ବନ୍ଧନର ମୋହ ତାଙ୍କୁ ସ୍ପର୍ଶ କରି ନଥିଲା । ପୂର୍ବ ବଙ୍ଗର ଅଧିବାସୀ ହୋଇଥିବାରୁ ଭାରତ ଭାଗ ଭାଗ ପରେ ସେ ତତ୍‌କାଳୀନ ପୂର୍ବପାକିସ୍ତାନର ବହୁ ଆଶ୍ରୟପ୍ରାର୍ଥୀଙ୍କୁ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରୁଥିଲେ ।

ଡକ୍ଟର ବର୍ଦ୍ଧନଙ୍କ ଖ୍ୟାତି ଭାରତ ଭିତର ଅପେକ୍ଷା ଭାରତ ବାହାରେ ଅଧିକ । ଜୈବ ରସାୟନବିତ୍ ଭାବରେ ଭାରତ ବାହାରର କୌଣସି ବୈଜ୍ଞାନିକ ଯଦି କୌଣସି ଭାରତୀୟ ନାମ ସହିତ ପରିଚିତ, ତେବେ ସେମାନଙ୍କ ଭିତରେ ସର୍ବପ୍ରଥମ ହେଉଛନ୍ତି ଡକ୍ଟର ବର୍ଦ୍ଧନ । ସେ ଯେଉଁ ସମୟରେ ଭାରତ ବାହାରେ ପ୍ରସିଦ୍ଧି ଅର୍ଜନ କରିଥିଲେ, ସେତେବେଳେ ବର୍ତ୍ତମାନର ବହୁ ଭାରତୀୟ ବୈଜ୍ଞାନିକଙ୍କ ନାମ ବିଶ୍ୱବିଦ୍ୟାଳୟ ସ୍ତରରୁ ଅଧିକ ଉପରକୁ ଉଠି ନଥିଲା । ତାଙ୍କଭଳି ଉଚ୍ଚ ମାନର ଗବେଷଣା ଖୁବ୍ କମ୍ ଭାରତୀୟ ବୈଜ୍ଞାନିକଙ୍କ ଭାଗ୍ୟରେ ଜୁଟିଛି ।

ପୃଥିବୀର ଯେତେ ବଡ ବଡ ଜୈବ ରସାୟନବିତ୍ ଭାରତ ପରିଦର୍ଶନରେ ଆସନ୍ତି, ସେମାନେ ଡକ୍ଟର ବର୍ଦ୍ଧନଙ୍କ ଗବେଷଣାଗାର ପରିଦର୍ଶନ ନକରି ଭାରତରୁ ବିଦାୟ ନିଅନ୍ତି ନାହିଁ । ତାଙ୍କ କଲିକତା ଗବେଷଣାଗାରକୁ କେତେ ନୋବେଲ୍ ପୁରସ୍କାର ବିଜେତା ଯେ ଆସିଛନ୍ତି, ତା'ର କଳନା ନାହିଁ ।

ନିଜ ଜ୍ଞାନ ଗରିମାକୁ ବାହାରେ ଦେଖାଇ ହେବା ତାଙ୍କର ଅଭ୍ୟାସ ନଥିଲା । ତେଣୁ ସେ ନିଜକୁ ସାଧାରଣ ବୈଜ୍ଞାନିକ ସଂଗଠନଠାରୁ ଦୂରରେ ରଖୁଥିଲେ । ଭାରତୀୟ ବୈଜ୍ଞାନିକମାନଙ୍କ ମଧ୍ୟରେ ଘୃଣ୍ୟ ଦଳାଦଳି ଓ କ୍ଷମତା ରାଜନୀତି ଚାଲିଥିବାରୁ ସେଥିରେ ନିଜକୁ ସଂପୃକ୍ତ କରିବାକୁ ଡ. ବର୍ଦ୍ଧନ ସର୍ବଦା ଘୃଣା କରୁଥିଲେ । ସେଥିଯୋଗୁଁ ସେ ବହୁ ବୈଜ୍ଞାନିକ ସଂଗଠନଠାରୁ ଦୂରରେ ଥିଲେ, ଏପରିକି ସେ ଭାରତୀୟ ବିଜ୍ଞାନ କଂଗ୍ରେସଠାରୁ ମଧ୍ୟ ନିଜକୁ ଦୂରରେ ରଖିଥିଲେ ।

ଲେଖକଙ୍କ ପ୍ରତି ବର୍ଦ୍ଧନଙ୍କର ଅଗାଧ ସ୍ନେହ ଥିଲା। କଲିକତାକୁ ବୁଲିଗଲେ ବା କାର୍ଯ୍ୟୋପଲକ୍ଷେ ଗଲେ ଡ. ବର୍ଦ୍ଧନଙ୍କୁ ସାକ୍ଷାତ ନ କରି ଲେଖକ ଫେରେ ନାହିଁ । ପ୍ରତିଥର ଲେଖକ ଡକ୍ଟର ବର୍ଦ୍ଧନଙ୍କ ବାସଭବନରେ ଆତିଥ୍ୟ ସ୍ୱୀକାର କରିବାକୁ ବାଧ୍ୟ ହୁଏ । ଲେଖକର ଗବେଷଣା ପ୍ରତି ଡକ୍ଟର ବର୍ଦ୍ଧନ ସର୍ବଦା ଦୃଷ୍ଟି ରଖୁଥାନ୍ତି । ଗବେଷଣା ଭିତରେ ଲେଖକ କୌଣସି ସମ୍ମାନ ଅର୍ଜ୍ଜନ କଲେ, ସେ ଆଗ ଅଭିନନ୍ଦନ ନ ଜଣାଇ ରହିପାରନ୍ତି ନାହିଁ । ଲେଖକଙ୍କ ଜୀବନ ଉପରେ କୌଣସି ବୈଜ୍ଞାନିକ ଯଦି ବିଶେଷ ଭାବରେ ପ୍ରଭାବ ପକାଇ ପାରିଛନ୍ତି ତେବେ ସେ ହେଉଛନ୍ତି ଡକ୍ଟର ଯୋଗେନ୍ଦ୍ର ଚନ୍ଦ୍ର ବର୍ଦ୍ଧନ । ଆଜି ସେ ଇହଧାମରେ ନ ଥିଲେ ହେଁ ତାଙ୍କର ଅଶେଷ ଗବେଷଣା ଓ ଅସଂଖ୍ୟ ଛାତ୍ରଛାତ୍ରୀଙ୍କ ଜରିଆରେ ସେ ଅମର ହୋଇ ଯାଇଛନ୍ତି । ତାଙ୍କ ବିୟୋଗ ଦ୍ୱାରା ଭାରତ ଜୈବ - ରସାୟନ ଜଗତର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଯେ ହରାଇଛି ଏହା କେହି ଅସ୍ୱୀକାର କରିବେନି ।





# ସାଲିମ୍ ଅଲୀ

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

କିଏ ସେହି ସାଲିମ୍ ଅଲୀ ? ଅଲୀସାହେବଙ୍କ ମୁଖର ବର୍ଣ୍ଣନା ଦେବାକୁ ଯାଇ ତାଙ୍କର ଜଣେ ବନ୍ଧୁ କହନ୍ତି, "ଅଲୀଙ୍କର ନାକଟା ଦେଖିଲେ ମୋତେ କୋଚିଲାଖାଇ ଚଢ଼େଇର ଥଣ୍ଟ ଦେଖିଲାଭଳି ଲାଗେ। ତାଙ୍କର ବଡ଼ ବଡ଼ କାନଦୁଇଟା ତ ଠିକ୍ ଚଢ଼େଇର ଡେଣା ପରି । ବେଳେବେଳେ ଏମିତି ଲାଗେ ସତେଯେପରି ସେ ଗୋଟିଏ ନାଚୁଣୀ ପକ୍ଷୀ । କାରଣ ନାଚୁଣୀ ପକ୍ଷୀ ଭଳି ସେ ସଦାଚଞ୍ଚଳ ଓ ସ୍ଫୂର୍ତ୍ତିବାଜ୍ ।"

୧୮୯୬ ମସିହା ନଭେମ୍ବର ମାସ ୧୨ ତାରିଖରେ ସାଲିମ୍ ମୋଇଜୁଦ୍ଦିନ୍ ଅବ୍ଦୁଲ୍ ଅଲୀଙ୍କର ଜନ୍ମ । ଏକ ସମ୍ଭ୍ରାନ୍ତ ପରିବାରର ଦାୟାଦ ସେ । କିନ୍ତୁ ତାଙ୍କୁ ନେଇ କୌଣସି ଘଞ୍ଚ ଜଙ୍ଗଲ କି ବୁଦିବୁଦିକିଆ ଗଛଥିବା ବିସ୍ତୀର୍ଣ୍ଣ ପ୍ରାନ୍ତର ଭିତରେ ଏକୁଟିଆ ଛାଡ଼ି ଦେଇଆସିଲେ ସେ ସବୁଠାରୁ ବେଶୀ ଖୁସି ହେବେ । କାରଣ "ବିଜନତା" ପ୍ରତି ତାଙ୍କର ମୋହ ବଡ଼ ପ୍ରବଳ ।

ପକ୍ଷୀଜଗତ ସହ ସତେ ଯେମିତି ସେ ଏକୀଭୂତ, ଏକାତ୍ମା । ପକ୍ଷୀମାନଙ୍କ ଭଳି ସେ ସୂର୍ଯ୍ୟ ଓ ଚନ୍ଦ୍ରର ଗତିବିଧିଦ୍ୱାରା ପରିଚାଳିତ ହୁଅନ୍ତି । ଦେଶାନ୍ତରବାସୀ ପକ୍ଷୀମାନଙ୍କ ଭଳି ବର୍ଷର କେଉଁ ସମୟରେ କେଉଁ ଅଞ୍ଚଳକୁ ଯିବାକୁ ହେବ, ତା' ସେ ନିର୍ଦ୍ଧାରଣ କରିବସନ୍ତି । ପ୍ରକୃତିର ସୌନ୍ଦର୍ଯ୍ୟ, ତା'ର ଭୀତିପ୍ରଦ ରୂପ, ତା'ର ରହସ୍ୟସମ୍ଭାରରେ ସେ ଆତ୍ମହରା ହୋଇପଡ଼ନ୍ତି ।

ସାଲିମ୍ ଅଲୀ ବଡ଼ ଭଦ୍ର ଓ ବିନୟୀ । ପକ୍ଷୀମାନଙ୍କୁ ପର୍ଯ୍ୟବେକ୍ଷଣ କରିବାକୁ ହେଲେ ଏଇ ଦୁଇଟି ଗୁଣର ଅଧିକାରୀ ହେବା ସର୍ବାଦୌ ଆବଶ୍ୟକ । ଅଲୀଙ୍କ ମତରେ ପକ୍ଷୀ ପର୍ଯ୍ୟବେକ୍ଷଣରେ ଆନ୍ତରିକତା ସହକାରେ ନିୟୋଜିତ ରହିଲେ ମଣିଷ, 'ମଣିଷ'

ପାଲଟିଯିବ । ବାୟାଚଢ଼େଇର କି ଦର୍ଜି ଚଢ଼େଇର ବସା ତିଆରି କାରିଗରି ଦେଖିଲେ ଜଣେ ଯତ୍ନଶୀଳ ଓ ଧୈର୍ଯ୍ୟଶୀଳ ହେବାକୁ ନ ଶିଖି ଆଉ କ'ଣ ବା ଶିଖିବ ?

ସାମାନ୍ୟ ଘରଚଟିଆଟିଏ । ଦଧୀଚିଭଳି ପ୍ରାଣଦାନ କରି ସମଗ୍ର ପକ୍ଷୀକୁଳର ନିରାପତ୍ତା ପାଇଁ ବ୍ୟବସ୍ଥା କରିଦେଲା ସେ । ନଅବର୍ଷ ବୟସ୍କ ବାଳକ ସାଲିମ୍‌ର ବାଟୁଳିଖଡ଼ା ମାଡ଼ରେ ମରିପଡ଼ିଲା ଘରଚଟିଆଟି । ସାଲିମର ମନରେ ଆସିଥିଲା ଅନୁତାପ । ଦାଦା ତା'ର ଆଣିଦେଲେ ସମାଧାନ । ଘରଚଟିଆଟିକୁ ନେଇ ବମ୍ବେ ପ୍ରକୃତି ବିଜ୍ଞାନ ସମିତି (Bombay Natural Histroy Society) ସାହାଯ୍ୟରେ ତା'ର ଜାତି ପ୍ରଜାତି ସମ୍ବନ୍ଧରେ ବିବରଣୀ ସଂଗ୍ରହ ପାଇଁ ସେ ସାଲିମ୍‌କୁ ନିର୍ଦ୍ଦେଶ ଦେଲେ । ବାସ୍ ସେତିକି । ସେଇ ଘଟଣାଟି ହିଁ ତାଙ୍କ ଜୀବନର ମୋଡ଼ ବଦଳାଇଦେଲା । ସମିତି ପକ୍ଷରୁ ସଂଗୃହୀତ ଜୀବନ୍ତ ଓ ମୃତ ପକ୍ଷୀମାନଙ୍କୁ ଦେଖି ସେ ପୁଲକିତ ହୋଇଉଠିଲେ । ପ୍ରକୃତିର ବୈଚିତ୍ର୍ୟର ଏକ ସମ୍ୟକ୍ ଆଭାସ ପାଇଲେ ସେ ସେଠାରୁ । ପୁଣି ମନରେ ଅନୁତାପ ଆସିଲା; ବୁଦା ଉହାଡ଼ରେ ଫୁଟୁରୁ ଫୁଟୁରୁ ଡେଇଁ ପୋକଯୋକ ଖୋଜିବାରେ ରତ ରହିଥିବା ପକ୍ଷୀ ଯେତେ ଆନନ୍ଦ ଆଣିଦେବ, ତା'କୁ ଧରିଆଣି ପିଞ୍ଜରାବନ୍ଧ କରିଦେଲେ ବା ବାଟୁଳିଖଡ଼ା ମାରି ତା'ର ପ୍ରାଣ ନେଇଗଲେ ସେ ଆନନ୍ଦର ଧାରା ଶୁଖିଯିବନି କି ? ପକ୍ଷୀମାନଙ୍କ ପ୍ରତି ସାଲିମ ଅଲୀଙ୍କ ଅନ୍ତରରେ ପ୍ରେମ ଉଦ୍ରେକ କରିବାରେ ପ୍ରଥମ ତଥା ପ୍ରଧାନ ଭୂମିକା ଗ୍ରହଣ କରିଥିଲେ ବମ୍ବେ ପ୍ରକୃତି ବିକାଶ ସମିତିର ଅର୍ଥନୈତିକ ସେକ୍ରେଟାରୀ ମିଷ୍ଟର ମିଲ୍ଲାର୍ଡ଼ ।

ନଅବର୍ଷ ବୟସ ପର୍ଯ୍ୟନ୍ତ ସାଲିମ ଅଲୀ ସ୍ଥାନୀୟ ବିଦ୍ୟାଳୟରେ ଶିକ୍ଷାଗ୍ରହଣ କରିଥିଲେ । ପରେ ପଢ଼ିଲେ ବମ୍ବେର ସେଣ୍ଟ ଜେଭିୟର କଲେଜରେ । କିନ୍ତୁ ଗଣିତ, ଆଲଜେବ୍ରା ଇତ୍ୟାଦିର କଷଣରୁ ମୁକ୍ତ ହେବା ନିମନ୍ତେ ଅଧାରୁ ପାଠପଢ଼ା ଛାଡ଼ି ଚାଲିଗଲେ ବର୍ମା (ଏବର ମିଆଁମାର); ଭାଇଙ୍କ ବ୍ୟବସାୟରେ ସାମିଲ ହେବାପାଇଁ ।

ସେଠାରେ ରହିଥିଲେ ପାଖାପାଖି ଦଶବର୍ଷ । କିନ୍ତୁ କାମରୁ ଫୁରୁସତ ମିଳିବା ମାତ୍ରେ ସେ ସେଠାରେ ପକ୍ଷୀମାନଙ୍କୁ ଅନୁଧ୍ୟାନ କରୁଥିଲେ । ଅକ୍ଟୋବର ୧୯୧୧ ରେ ଫେରିଆସି ସେଣ୍ଟ ଜେଭିୟର୍ କଲେଜରୁ ପ୍ରାଣିବିଜ୍ଞାନରେ ବି.ଏ. ପାସ୍ କରିଥିଲେ ସେ । ଫାଦର୍ ବ୍ଲାର୍ଟରଙ୍କ ସୁପାରିସକ୍ରମେ ପ୍ରିନ୍ସ ଅଫ୍ ୱେଲ୍ସ ସଂଗ୍ରହାଳୟର 'ପ୍ରାକୃତିକ ଇତିହାସ' (Natural History) ବିଭାଗରେ ଯୋଗ ଦେଇଥିଲେ ସାଲିମ ଅଲୀ ।

୧୯୨୯-୩୦ ମସିହାରେ ବର୍ଲିନ୍ ବିଶ୍ୱବିଦ୍ୟାଳୟର ପ୍ରାଣିବିଜ୍ଞାନ ଯାଦୁଘରେ ଏର୍‌ଉଇନ୍ ଷ୍ଟ୍ରେସ୍‌ମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ ପକ୍ଷୀବିଜ୍ଞାନ ସମ୍ବନ୍ଧରେ ତାଲିମ୍ ପାଆନ୍ତି ସାଲିମ୍ ଅଲୀ । ସେଠାରୁ ଫେରି ଭାରତୀୟ ଉପମହାଦେଶର ବହୁ ଦୁର୍ଗମ ଅଞ୍ଚଳରେ ପଦାର୍ପଣ କରି ସେ ସେଠାକାର ପକ୍ଷୀଜଗତ୍ ସମ୍ବନ୍ଧରେ ଆଲୋକପାତ କରନ୍ତି । ହିମାଳୟର ପଶ୍ଚିମାଞ୍ଚଳ, ସିକିମ୍, ଭୁଟାନ୍, ଅରୁଣାଚଳପ୍ରଦେଶ, ପଶ୍ଚିମ ତିବ୍ଦତ, ଆଫ୍‌ଗାନିସ୍ତାନ, ବ୍ରହ୍ମଦେଶ, ଏବକାର ମିଆଁମାର, ମାଳୟଆଦି ସ୍ଥାନମାନଙ୍କର ପକ୍ଷୀମାନଙ୍କ ସମ୍ବନ୍ଧରେ ବହୁ ଅଜଣା ତଥ୍ୟର ସନ୍ଧାନ ଦିଅନ୍ତି ସେ ।

'ଭାରତୀୟ ପକ୍ଷୀକୁଳ' (The Book of Indian Birds), 'କଚ୍ଛର ପକ୍ଷୀ' (The Birds of Kutch), 'ଭାରତର ପାର୍ବତ୍ୟାଞ୍ଚଳର ପକ୍ଷୀ', (Indian Hill Birds) 'ଟ୍ରାଭାଙ୍କୋର ଓ କୋଚିନ୍‌ର ପକ୍ଷୀ' (The Birds of Travancore & Kochin) (ଏଇ ପୁସ୍ତକ ପରେ 'କେରଳର ପକ୍ଷୀ' (The Birds of Kerala) ରୂପେ ନାମିତ), 'ସିକିମ୍‌ର ପକ୍ଷୀ' (The Birds of Sikim), 'ହିମାଳୟର ପୂର୍ବାଞ୍ଚଳରେ ଦେଖାଯାଉଥିବା ପକ୍ଷୀମାନଙ୍କୁ ଅନୁଧ୍ୟାନ କରିବାର ଗାଇଡ୍' (Field Guide to the Birds of the Eastern Himalayas) ଆଦି ପୁସ୍ତକର ପ୍ରଣେତା ସେ । ଏତଦ୍‌ବ୍ୟତୀତ ତାଙ୍କର ସହକର୍ମୀ ଏସ୍. ଡିଲୋଁ ରିପ୍ଲେଙ୍କ ସହ ମିଶି ସେ 'ଭାରତୀୟ ଓ ପାକିସ୍ତାନୀ ପକ୍ଷୀମାନଙ୍କ ସମ୍ବନ୍ଧରେ ସାଧାରଣ ହ୍ୟାଣ୍ଡ୍‌ବୁକ୍ (Handbook of the Birds of India and Pakistan) ନାମକ ପୁସ୍ତକ ମଧ୍ୟ ରଚନା କରିଛନ୍ତି । ଉଭୟଙ୍କ ଦ୍ୱାରା, ପ୍ରଣୀତ 'ଭାରତୀୟ ଉପମହାଦେଶର ପକ୍ଷୀମାନଙ୍କର ଏକ ଚିତ୍ରିତ ଗାଇଡ୍' (A Pictorial Guide to the Birds of the Indian Subcontinent) ପୁସ୍ତକ ବମ୍ବେ ପ୍ରକୃତି ବିଜ୍ଞାନ ସମିତି ପ୍ରତିଷ୍ଠାର ଶତତମ ପୂର୍ତ୍ତି ଉତ୍ସବ ପାଳିତ ହେବା ଅବସରରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦ୍ୱାରା ଉନ୍ମୋଚିତ ହେଇଥିଲା ।

ଏହାଛଡ଼ା ତାଙ୍କର ଶତାଧିକ ପ୍ରବନ୍ଧ ଦେଶ ବିଦେଶର ବହୁ ପତ୍ରପତ୍ରିକାରେ ପ୍ରକାଶିତ । ଉକ୍ତ ପୁସ୍ତକାବଳୀ ଓ ପ୍ରବନ୍ଧାଦିରେ ପକ୍ଷୀମାନଙ୍କର ବର୍ଗୀକରଣ, ସେମାନଙ୍କର ବଂଶ, ଜାତି, ପ୍ରଜାତି ଇତ୍ୟାଦି ସମ୍ବନ୍ଧରେ ସଠିକ୍ ବର୍ଣ୍ଣନା ଦେଇଛନ୍ତି ସେ । ସେ ଦର୍ଶାଇଛନ୍ତି ଯେ ଆମ ଦେଶରେ ପ୍ରାୟ ବାର ଶହ ବିଭିନ୍ନ ଜାତିର ପକ୍ଷୀ ଦେଖାଯାଇଥାନ୍ତି । କୌଣସି ଗୋଟିଏ ଦେଶରେ ଏତେ ପ୍ରକାରର ପକ୍ଷୀ ଦେଖାଯିବା ବିରଳ । ସେମାନଙ୍କ ମଧ୍ୟରୁ କିଏ ହୁଏତ ଭାରତର ସ୍ଥାୟୀ ବାସିନ୍ଦା, କିଏ ହୁଏତ ଯାଯାବର, ଶୀତକାଳଟି କଟାଇବା ପାଇଁ

ଏଠାରେ ଆସି ଉପସ୍ଥିତ ହୋଇ ଶୀତାନ୍ତେ ପୁଣି ବାହୁଡ଼ି ଯାଆନ୍ତି ନିଜ ଦେଶକୁ । ପକ୍ଷୀମାନଙ୍କର ଆକାର, ବର୍ଣ୍ଣ, ଶରୀର ଗଠନ, ସ୍ୱଭାବ, ଆଚରଣ, ବାସସ୍ଥାନ, ସେମାନଙ୍କ ମଧ୍ୟରେ ପ୍ରଣୟ, ପରସ୍ପରକୁ ତୁଷ୍ଟ କରିବାର ଧାରା, ନୀଡ଼ରଚନା ପ୍ରଣାଳୀ, ଶାବକ ପ୍ରତିପାଳନ; ସେମାନଙ୍କର ସାମାଜିକ ବ୍ୟବସ୍ଥା, ଖାଦ୍ୟାଭ୍ୟାସ, ମଣିଷ ପ୍ରତି ସେମାନଙ୍କର ବ୍ୟବହାର ଓ ଦେଶାନ୍ତର ଗମନଆଦି ସମ୍ବନ୍ଧରେ ବହୁଅଜଣା ତଥ୍ୟର ସନ୍ଧାନ ଦେଇଛନ୍ତି ଡକ୍ଟର ଅଲୀ । ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନ୍ ଆଦି ଦେଶର ବହୁଅନୁଷ୍ଠାନର ସମ୍ମାନିତ ସଭ୍ୟରୂପେ ଡକ୍ଟର ଅଲୀ ସ୍ଥାନ ପାଇଛନ୍ତି । ବଣ୍ୟଜନ୍ତୁ ଓ ପ୍ରକୃତି ସଂରକ୍ଷଣ ସଂକ୍ରାନ୍ତୀୟ ଏକାଧିକ ଜାତୀୟ ଏବଂ ଅନ୍ତର୍ଜାତୀୟ ସଂସ୍ଥାର ସେ ସଭ୍ୟ । ବମ୍ବେ ପ୍ରକୃତି ବିଜ୍ଞାନ ସମିତିର ସେ ସଭାପତି ରହି ଆସିଥିଲେ ।

ପଦ୍ମଭୂଷଣ, ପଦ୍ମବିଭୂଷଣ, ଜୟଗୋବିନ୍ଦ ଲ' ମେଡ଼ାଲ୍, ବ୍ରିଟିଶ୍ ପକ୍ଷୀବିଶେଷଜ୍ଞ ୟୁନିୟନ୍ ଦ୍ୱାରା ପ୍ରଦତ୍ତ ୟୁନିୟନ୍ ସ୍ୱର୍ଣ୍ଣପଦକ, ଜନ୍ ଫିଲିପ୍ସ୍ ସ୍ମୃତିପଦକ, ସୁନ୍ଦରଲାଲ ହୋରା ସ୍ମୃତିପଦକ, ପାଭ୍ଲୋଭସ୍କି ଶତବାର୍ଷିକୀ ସ୍ମୃତିପଦକ, ଚନ୍ଦ୍ରଶେଖର ଭେଙ୍କଟରାମନ୍ ପଦକ, ବଙ୍ଗଳାଦେଶସ୍ଥ ଏସିଆଟିକ୍ ସୋସାଇଟି ସ୍ୱର୍ଣ୍ଣପଦକ, ନେଦରଲ୍ୟାଣ୍ଡର ରାଜାଙ୍କ ଦ୍ୱାରା ପ୍ରଦତ୍ତ Officer in the Order of the Golden Ark ସମ୍ମାନ, ଆଲିଗଡ଼, ଦିଲ୍ଲୀ ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରଦତ୍ତ ଡକ୍ଟର ଅଫ୍ ସାଇନ୍ସ ଉପାଧି, ରବୀନ୍ଦ୍ର ନାଥ ଠାକୁର ଫଳକ, ପଲ୍ ଗେଟି ଆନ୍ତର୍ଜାତିକ ପୁରସ୍କାର, ଅନ୍ତର୍ଜାତୀୟ (ବନ୍ୟଜନ୍ତୁ) ସଂରକ୍ଷଣ ପୁରସ୍କାର, ଭାରତର ଜାତୀୟ ପ୍ରଫେସର୍ ଆଦି ପଦକ, ପୁରସ୍କାର ଓ ଉପାଧିଗୁଡ଼ିକରେ ତାଙ୍କୁ ସଜେଇ ଦେଲେ ସେ ହୁଏତ ମୟୁର ଭଳି ଶୋଭନୀୟ ଓ ଏରା ଭଳି ଆକର୍ଷଣୀୟ ପ୍ରତିଭାତ ହେବେ ।

୧୮୮୩ ମସିହାରେ ପରିବେଶ ସଚେତନ କତିପୟ ଉତ୍ସାହୀ ବ୍ୟକ୍ତିମାନଙ୍କର ପ୍ରଚେଷ୍ଟାରେ ପ୍ରତିଷ୍ଠିତ ହୁଏ ବମ୍ବେ ପ୍ରକୃତି ବିଜ୍ଞାନ ସମିତି । କିନ୍ତୁ ଏହା ସାଲିମ୍ ଅଲୀଙ୍କ ଅନୁଷ୍ଠାନ ରୂପେ ଅଧିକ ପରିଚିତ । ଏବେ ଏହାର ସଭ୍ୟ ସଂଖ୍ୟା ୨୦୦୦ରୁ ଉର୍ଦ୍ଧ୍ୱ । ଏହାର ସଂଗ୍ରହାଳୟ ମଧ ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । ଏହି ସଂସଦର ପୃଷ୍ଠପୋଷକତା ଫଳରେ 'ଗିର୍'ର ସିଂହ, କଚ୍ଛର ଏରା, ଆସାମର ଗଣ୍ଡାଆଦି ସୁରକ୍ଷିତ ହୋଇ ବଂଶବୃଦ୍ଧି କରିବାକୁ ସମର୍ଥ ହୋଇ ପାରିଛନ୍ତି । ଏ ସମସ୍ତ କାର୍ଯ୍ୟଧାରାର ମୁଖ୍ୟ ସଞ୍ଚାଳକ ଥିଲେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ପକ୍ଷୀବିଜ୍ଞାନ ବିଶେଷଜ୍ଞ ଡକ୍ଟର ସାଲିମ ଅଲୀ ।

୧୮୯୪ ମସିହା । ସେହି ବର୍ଷ ଏକ କୋଚିଲାଖାଇ ଚଢ଼େଇ ବମ୍ବେ ପ୍ରକୃତି ବିଜ୍ଞାନ ସମିତିର ପରିବାରଭୁକ୍ତ ହେଲା । ସେତେବେଳେ ତାର ନାମ ରଖାଯାଇଥିଲା 'ଉଇଲିୟମ୍' । ଦୀର୍ଘ ୨୬ ବର୍ଷ ଧରି ଉଇଲିୟମ୍ ସମିତିର ସଂଗ୍ରହାଳୟ ମଣ୍ଡନ କରୁଥିଲା । ସମିତିର ପରମ୍ପରାକୁ ସମ୍ମାନ ଜଣାଇ ସେ ମଧ ଦର୍ଶକମାନଙ୍କର ମନୋରଞ୍ଜନ କାର୍ଯ୍ୟରେ ବ୍ରତୀ ରହିଥିଲା । ତା' ଆଡ଼କୁ ଟେନିସ୍ ବଲ୍‌ଟିଏ ଫୋପାଡ଼ି ଦେଲେ, ସେ ବଲଟିକୁ ଥଣ୍ଟରେ ଧରିନେବା ଦୃଶ୍ୟ ଥିଲା ସବୁଠାରୁ ଆକର୍ଷଣୀୟ । ୧୯୨୦ ମସିହାରେ ଏକ ତାରକୁ ଗିଳିଦେବା ଫଳରେ ଉଇଲିୟମ୍‌ର ମୃତ୍ୟୁ ହୁଏ । ବମ୍ବେ ପ୍ରକୃତି ବିଜ୍ଞାନ ସମିତିର ଇତିହାସରେ ଏହା ଥିଲା ସବୁଠାରୁ ବଳି ଦୁଃଖଦ ଘଟଣା । କୌଣସି ପ୍ରିୟପରିଜନଙ୍କର ମୃତ୍ୟୁ ଅପେକ୍ଷା ଉଇଲିୟମର ମୃତ୍ୟୁ ଥିଲା ଅଧିକ ଶୋକାବହ । ତା' ପରେ ଏହା ସମିତିର ଶୁଭସଙ୍କେତ ରୂପେ ସ୍ୱୀକୃତ ହୋଇ ୧୯୩୨ ମସିହାରେ ଉଇଲିୟମ୍‌ର ଛବି ସମିତିର ପ୍ରତୀକ ରୂପେ ସ୍ଥାନ ପାଇଲା । ୧୯୬୫ ମସିହାରେ ସମିତିର କାର୍ଯ୍ୟାଳୟ ଯେତେବେଳେ ବର୍ତ୍ତମାନର କୋଠିକୁ ସ୍ଥାନାନ୍ତରିତ ହେଲା, ଉଇଲିୟମ୍‌ର ସ୍ମୃତିକୁ ଚିରଦିନ ଲାଗି ଜୀବିତ ରଖିବାପାଇଁ ଉକ୍ତ କୋଠିର ନାମକରଣ କରାଗଲା 'ହର୍ଣ୍ଣବିଲ୍ ହାଉସ୍' ବା 'କୋଚିଲାଖାଇ ଆବାସ' । ବମ୍ବେସ୍ଥ 'ପ୍ରିନ୍ସ ଅଫ୍ ୱେଲସ୍' ଯାଦୁ ଘରେ ଉଇଲିୟମ୍‌ର ମରଶରୀର ସଂରକ୍ଷିତ ହୋଇ ରହିଛି । ବମ୍ବେ ପ୍ରକୃତି ବିଜ୍ଞାନ ସମତି ପ୍ରତିଷ୍ଠାର ଶତବାର୍ଷିକୀ ଉତ୍ସବ ଉପଲକ୍ଷେ ପ୍ରକାଶିତ ଡାକଟିକଟ୍‌ରେ ଉଇଲିୟମ୍ ସ୍ଥାନପାଇଛି । ଉଇଲିୟମ୍ ମରି ବି ଆଜି ଅମର ।

ସେ ଯାହାହେଉ ଅଲୀ ସାହେବ ଏକ ଅଦ୍ଭୁତ ଚରିତ୍ର । ସେ ପିଲାମାନଙ୍କ ନିକଟରେ 'ଚଢ଼େଇ ବୁଢ଼ା' ରୂପେ ପରିଚିତ । କିନ୍ତୁ ନିଜ ପରିବାରରେ ?

ପରିବାର ପରିଚାଳନା ପାଇଁ ଭୃକ୍ଷେପ ନଥିଲା ତାଙ୍କର । ପକ୍ଷୀବସା ଖୋଜୁ ଖୋଜୁ ବମ୍ବେର ପାଲି ହିଲ୍‌ସ୍ଥିତ ନିଜ 'ବାସ'ଟି ସମ୍ବନ୍ଧରେ ସେ ବିସ୍ମୃତ ହୋଇଯାଉଥିଲେ । ବିହଙ୍ଗମାନଙ୍କର କୂଜନରେ ଆତ୍ମହରା ହୋଇ ପରିବାରର ବ୍ୟକ୍ତିମାନଙ୍କର କୂଜନ ଶୁଣିବାରେ କି ତାଙ୍କୁ ଶୁଣେଇବାରେ ତାଙ୍କର ସମୟ ନଥିଲା । ତେବେ ସେ ଯେ ତାଙ୍କର ଏହି ଦୁର୍ବଳତା ସମ୍ବନ୍ଧରେ ସଚେତନ ନଥିଲେ; ତା' ନୁହେଁ । 'ତେହ୍‌ମିନା'ଙ୍କ ପ୍ରସଙ୍ଗ ଉଠିଲେ ସେ ତାଙ୍କର ଭାବାବେଶକୁ ନିୟନ୍ତ୍ରଣ କରିପାରି ନଥିଲେ । ସେ କହୁଥିଲେ, 'ତେହ୍‌ମିନା ! ତମେ ହିଁ ଥିଲ ମୋର ପ୍ରେରଣାଦାତ୍ରୀ । ତମେ ହିଁ ମୋର ପଥପ୍ରଦର୍ଶିକା,

ତମେ ହିଁ ମୋର ବନ୍ଧୁ । ମୁଁ ତମ ରୋଗଶଯ୍ୟା ପାଖରେ ଉପସ୍ଥିତ ରହି ନ ପାରିଲେ ବି ଆଉ କେଉଁ ଅନାଥ ପକ୍ଷୀ ଛୁଆଟିକୁ ଆଉଁସି ତା' ଜୀବନ ବଞ୍ଚାଇବାରେ ହୁଏତ ବ୍ୟସ୍ତ ରହିଥିଲି । ତୁମ ଖାଦ୍ୟପେୟର ବ୍ୟବସ୍ଥା ନ କରିପାରିଥିଲେ ବି ଭୋକିଲା ବୁଲ୍‌ବୁଲ୍‌ଟିର ଥଣ୍ଟରେ ଖୁଦକଣାଟିଏ ଦେବାପାଇଁ ବ୍ୟବସ୍ଥା କରିଥିଲି ତ !"

"ଥର୍ ମରୁଭୂମିରେ ସେଦିନ ବାହୁନୁଥିଲା 'ହୁକ୍‌ନା' । ତା'ର ପ୍ରାଣପ୍ରିୟ ପତିକୁ ଆରବର ଶେଖ୍ ଗୁଳିକରି ମାରିଦେଲା । ହୁକ୍‌ନା ମାଂସରେ ସେ ମଣୋହି କରିବ । ହୁକ୍‌ନାର ବଂଶ ଯେ ବୁଡ଼ିବୁଡ଼ି ଆସୁଛି, ତା'ର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ସହିପାରିଲିନି, ଦଉଡ଼ିଗଲି ସେଠାକୁ । ହୁକ୍‌ନା ପରିବାରକୁ ସାନ୍ତ୍ୱନା ଦେଲି । ତାଙ୍କ ହେପାଜତ୍ ପାଇଁ ସରକାରଙ୍କୁ ଗୁହାରି କଲି । ହୁକ୍‌ନା ପରିବାରର ସଭ୍ୟ ସଂଖ୍ୟା ଏବେ ବଢ଼ିବାରେ ଲାଗିଛି ।

"ଲଦାଖରେ ମନମାରି ବସିଛି ସାରସ । ତା'ର ବଂଶ ବଢୁ ନାହିଁ । ଛିଡ଼ିଛିଡ଼ି ଆସୁଛି । ଜଗିରହିଲି ତା'ର ଅଣ୍ଡାକୁ । ଜଗିରହିଲି ତାକୁ । ତମକୁ ଜଗି ରହିଥିଲେ ସାରସ ପରା ପୃଥିବୀ ପୃଷ୍ଠରୁ ଲୋପ ପାଇଯାଇଥାନ୍ତା ।

"ହେଲେ, ତମେ କିନ୍ତୁ କେବେ ଆପତ୍ତି କରିନାହଁ, ଅଭିଯୋଗ ବାଢ଼ିନାହଁ । ମୋ' 'ଖିଆଲ୍' ପ୍ରତି ସମ୍ମାନ ଜଣାଇ ତମେ ହୁଏତ ତମର ଖିଆଲ୍‌କୁ ସମାଧି ଦେଉଥିବ । ମୋର ଆନ୍ତରିକ କୃତଜ୍ଞତା ନିଅ ତେହମିନା' ପକ୍ଷୀ ଜଗତର ଆଶିଷ ଘେନ ।" ତେହ୍‌ମିନା ଥିଲେ ସାଲିମ୍ ଅଲୀଙ୍କର ଆଦରଣୀୟା ସହଧର୍ମିଣୀ ।

x x x

ଆପଣମାନେ କ'ଣ କିଛି ଶୁଣି ପାରୁନାହାଁନ୍ତି ? ଏଇ, ଧୀରେ କାନପାତି ଶୁଣନ୍ତୁ —

'ହୁକ୍' - 'ହୁକ୍', 'ହୁକ୍' - 'ହୁକ୍', 'ହୁକ୍' - 'ହୁକ୍' ।

'ମେ-ଅ', 'ମେ-ଅ', 'ମେ-ଅ' ।

'ହ୍ୱିଇଚିଚି', 'ହ୍ୱିଇଚିଚି', 'ହ୍ୱିଇଚିଚି' ।

'ଟି-ଭର୍', 'ଟି-ଭର୍', 'ଟି-ଭର୍' ।

ଥର୍ ମରୁଭୂମିରୁ 'ହୁକ୍ ନା', ଶିମିଳିପାଳ ଜଙ୍ଗଲରୁ 'ମୟୂର', ହିମାଳୟ ପାଦଦେଶରୁ 'ରାମଗଙ୍ଗା' ଓ ବିନ୍ଧ୍ୟଗିରି ଚୂଡ଼ାରୁ 'ଭରତ ପକ୍ଷୀ — ସମସ୍ତଙ୍କ କଣ୍ଠରେ ଥିଲା ସେହି ଗୋଟିଏ ସ୍ୱର —

'ସାଲିମ୍ ଅଲୀ ଦୀର୍ଘାୟୁ ହୁଅ,
ପକ୍ଷୀ ସମାଜର ସଲାମ୍ ନିଅ ।'

ସାଲିମ୍ ଅଲୀ ୯୦ ବର୍ଷ ବୟସରେ ୧୯୮୭ ମସିହା ଜୁନ୍ ୨୦ ତାରିଖରେ ଇହଧାମ ତ୍ୟାଗ କରିଥିଲେ । କୁହାଯାଏ ଯେ ଭାରତରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠି ତାଙ୍କ ରବର ଜୋତାର ଚିହ୍ନ ପଡ଼ିନାହିଁ ।

ବମ୍ବେଠାରେ ଏକ ପକ୍ଷୀବିଜ୍ଞାନ ପ୍ରତିଷ୍ଠାନ ପ୍ରତିଷ୍ଠା କରିବାର ପରିକଳ୍ପନା ଥିଲା ତାଙ୍କର । କିନ୍ତୁ ତାହା ବାସ୍ତବରୂପ ନେଇ ପାରିଲା ନାହିଁ । ତେବେ ୧୯୮୯ ମସିହାରେ ପଣ୍ଡିଚେରୀ ବିଶ୍ୱବିଦ୍ୟାଳୟର ପୃଷ୍ଠପୋଷକତାରେ ପ୍ରତିଷ୍ଠିତ ହୋଇଛି 'ସାଲିମ ଅଲୀ ସ୍କୁଲ୍ ଅଫ୍ ଇକୋଲୋଜି' ।

'ଫଲ୍ ଅଫ୍ ଏ ସ୍ପାରୋ' ( Fall of a Sparrow ) ହେଉଛି ସାଲିମ ଅଲୀଙ୍କର ଆତ୍ମଜୀବନୀ ।



# ସୁନ୍ଦରଲାଲ ହୋରା

- ପ୍ରଫେସର ଡକ୍ଟର ବସନ୍ତ କୁମାର ବେହୁରା

ଆଧୁନିକ ଭାରତୀୟ ପ୍ରାଣିବିଜ୍ଞାନବିତ୍‌ମାନଙ୍କୁ ସ୍ମରଣ କଲେ ସର୍ବପ୍ରଥମେ ମନେପଡେ ସାର ସୁନ୍ଦରଲାଲ୍ ହୋରାଙ୍କୁ । ସେ ଥିଲେ ଜଣେ ପ୍ରଖ୍ୟାତ ମତ୍ସ୍ୟବିଜ୍ଞାନବିତ୍ । ସେ ୧୯୧୯ ମସିହାରେ କେନ୍ଦ୍ରୀୟ ଅନୁଷ୍ଠାନ 'ଭାରତୀୟ ପ୍ରାଣିବିଜ୍ଞାନ' ସର୍ଭେରେ ଜଣେ ଗବେଷକଭାବେ ଯୋଗଦେଇ ଶେଷରେ ତାର ଡାଇରେକ୍‌ଟର ଆସନ ଅଳଙ୍କୃତ କରିଥିଲେ । ୧୯୫୫ ସାଲରେ ତାଙ୍କର ତିରୋଧାନ ଘଟେ । ୧୯୨୦ - ୧୯୫୫ - ଏହି ୩୬ ବର୍ଷର କର୍ମମୟ ଜୀବନରେ ସେ ପ୍ରକାଶ କରିଥିଲେ ୨୭ଟି ଗବେଷଣାମୂଳକ ପ୍ରବନ୍ଧ । ଅବଶ୍ୟ ମୃତ୍ୟୁ ପରେ ୧୯୫୬ ସାଲରେ ଯେଉଁ କେତୋଟି ଲେଖା ପ୍ରକାଶ ପାଇଥିଲା, ସେସବୁ ଏହି ସଂଖ୍ୟାର ଅନ୍ତର୍ଭୁକ୍ତ । ଡାକଟିକଟ ସଂଗ୍ରହଠାରୁ ବନଶୀଖଡାରେ ମାଛ ମାରିବା ପର୍ଯ୍ୟନ୍ତ କାହାର କେତେ ସଉକ ଥାଏ । ଡକ୍ଟର ହୋରାଙ୍କର ସଉକ ଥିଲା ବୈଜ୍ଞାନିକ ପ୍ରବନ୍ଧ ରଚନା କରିବାରେ ।

୧୮୯୬ ସାଲରେ ତାଙ୍କର ଜନ୍ମ । ବିଦ୍ୟାଶିକ୍ଷା ହୋଇଥିଲା ଜଳନ୍ଧର ଓ ଲାହୋରରେ । ଲାହୋର ସରକାରୀ କଲେଜରୁ ସେ ପ୍ରାଣିବିଜ୍ଞାନରେ ଏମ୍. ଏସ୍‌ସି. ଡିଗ୍ରୀ ହାସଲ କରିଥିଲେ । ତାଙ୍କର ଅଧ୍ୟାପକ ଥିଲେ ପୃଥିବୀ ବିଖ୍ୟାତ ମହୀଲତା (ଜିଆ) ବିଶେଷଜ୍ଞ ଜର୍ଜ ଷ୍ଟିଭେନ୍‌ସନ୍ । ଛାତ୍ରାବସ୍ଥାରେ ହୋରା ଗୋଟିଏ ସନ୍ଦର୍ଭ ଲେଖିଥିଲେ । ତା'ର ବିଷୟବସ୍ତୁ ଥିଲା 'ଲାହୋରର ମତ୍ସ୍ୟ' । ଭାରତୀୟ ପ୍ରାଣିବିଜ୍ଞାନ ସର୍ଭେର ତତ୍‌କାଳୀନ ଡାଇରେକ୍ଟର ଏମ୍. ଆନାନ୍‌ଡେଲ ଏହି ସନ୍ଦର୍ଭ ଦେଖି ଖୁବ୍ ଖୁସି ହୋଇଥିଲେ । ଏମ୍.ଏସସି. ପାଶ୍ ପରେ ସେ ଯଦି ଗବେଷକ ଭାବରେ ସର୍ଭେରେ ଯୋଗଦେଇ ତାଙ୍କୁ ମତ୍ସ୍ୟ ଗବେଷଣାରେ ସାହାଯ୍ୟ କରନ୍ତି ତେବେ ସେ ଆନନ୍ଦିତ ହେବେ ବୋଲି ଜଣାଇଥିଲେ ।

ହୋରାଙ୍କ ପିତାଥିଲେ ବାସ୍ତବବାଦୀ । ସେ ତାଙ୍କୁ ଚେତାଇ ଦେଇଥିଲେ, "ପୁଅରେ, ପ୍ରାଣିବିଜ୍ଞାନ କଲେ ପେଟପୋଷା ହେବନାହିଁ । ପାଠଶେଷ କଲେ, ଏଥର ବ୍ୟବସାୟରେ ଯୋଗଦିଅ ।" ବାପାଙ୍କ ଇଚ୍ଛାନୁସାରେ ହୋରା ଯାଇ ବ୍ୟବସାୟ ଆରମ୍ଭ କଲେ ସିମଳାରେ ।

ହେଲେ ବିହି ଯାହା ଲେଖିଛି ତାକୁ କେ କରିବ ଆନ ! ଅଧ୍ୟାପକ ଷ୍ଟିଭେନ୍‌ସନ୍ ଓ ସ୍ୱନାମଧନ୍ୟ ଭାରତୀୟ ପ୍ରାଣିବିଜ୍ଞାନବିତ୍ ଡକ୍ଟର ଚଇନି ପ୍ରସାଦଙ୍କ ତାଡନା, ପରାମର୍ଶ ଓ ପ୍ରବର୍ତ୍ତନା ହୋରାଙ୍କ ଜୀବନ ଧାରାର ଦିଗ ବଦଳାଇଦେଲା । ସେ ବ୍ୟବସାୟ ଛାଡି କଲିକତା ଗଲେ ଓ ଭାରତୀୟ ପ୍ରାଣିବିଜ୍ଞାନ ସର୍ଭେରେ ଜଣେ ଗବେଷକ ଭାବରେ ୧ ୯ ୧ ୯ ସାଲରେ ଯୋଗଦେଲେ । ଏହି ସଂସ୍ଥାର ମୁଖ୍ୟ ଡକ୍‌ଟର ଆନାନ୍‌ଡେଲ ଥିଲେ ଜଣେ ଉଚ୍ଚକୋଟୀର ଗବେଷକ । ହୋରା ତାଙ୍କ ପାଖରେ କାମକରି ସନ୍ତୋଷ ଲାଭ କରିଥିଲେ ଓ ସର୍ବଦା ତାଙ୍କୁ ଭକ୍ତି କରୁଥିଲେ । ୧ ୯ ୨ ୦ ସାଲରେ ହୋରାଙ୍କ ପ୍ରଥମ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶିତ ହୁଏ । ଏହା ଆନାନ୍‌ଡେଲଙ୍କ ସହିତ ଯୁଗ୍ମନାମରେ ମୁଦ୍ରିତ ହୋଇଥିଲା । ବିଷୟବସ୍ତୁ 'ସିଷ୍ଟାନ୍‌ର ମତ୍ସ୍ୟକୁଳ'। କଥାଅଛି, ଯଦି ପ୍ରାଣିବିଜ୍ଞାନ ଶିଖିବାକୁ ଚାହଁ, ତେବେ ଗବେଷଣାଗାର ଛାଡି ଯାଅ ପ୍ରକୃତିର କୋଳକୁ, ତା'ର ଗନ୍ତାଘରକୁ । ହୋରା ଗବେଷଣା କରିଥିଲେ ମଧୁର ଜଳର ମାଛ ସମ୍ବନ୍ଧରେ । ନଦୀ ପୋଖରୀରେ ମାଛମାନଙ୍କ ସମ୍ବନ୍ଧରେ ଜ୍ଞାନ ଆହରଣରେ ସେ ଥିଲେ ଅଦ୍ୱିତୀୟ। ତାଙ୍କର ସଦାଜାଗ୍ରତ ଅନୁସନ୍ଧିତ୍ସୁ ଆଖି ମାଛମାନଙ୍କର ଗତିବିଧିର ସାମାନ୍ୟତମ ବିଷୟ ମଧ୍ୟ ଏଡାଇ ଯାଉନଥିଲା । ପ୍ରାଣିବିଜ୍ଞାନର ବିଭିନ୍ନ ବିଷୟରେ ସେ ଗବେଷଣା କରିଥିଲେ; ମାତ୍ର ସେସବୁ ମଧୁର ଜଳର ମାଛକୁ କେନ୍ଦ୍ରକରି । ତାଙ୍କର ଗବେଷଣାର ପରିସର ହେଲା - ବର୍ଗୀକରଣ, ପ୍ରାଣିଭୂଗୋଳ, ବିବର୍ତ୍ତନବାଦ, ପରିବେଶ ବିଜ୍ଞାନ, ଶରୀରକ୍ରିୟା ବିଜ୍ଞାନ ଇତ୍ୟାଦି । ପ୍ରାଣିବିଜ୍ଞାନର ଇତିହାସ ସମ୍ବନ୍ଧରେ ମଧ୍ୟ ସେ ବହୁ ଗବେଷଣା ମୂଳକ ପ୍ରବନ୍ଧ ରଚନା କରିଥିଲେ । ଭାରତ ବ୍ୟତୀତ ଆଫଗାନିସ୍ତାନ, ଜର୍ମାନୀ, ମିଆଁମାର, ମାଳୟ, ଥାଇଲାଣ୍ଡ, ଚୀନ, ଇଣ୍ଡୋନେସିଆ ଏବଂ ଇରାନର ମତ୍ସ୍ୟମାନଙ୍କର ବର୍ଗୀକରଣ ସମ୍ବନ୍ଧରେ ସେ ଉଚ୍ଚକୋଟୀର ପ୍ରବନ୍ଧ ପ୍ରକାଶ କରିଥିଲେ । ବହୁ ନୂତନ ଜାତି ଓ ଅନେକ ନୂତନ ପ୍ରଜାତି (genus) ମାଛର ବର୍ଣ୍ଣନା ସେ ଲିପିବଦ୍ଧ କରିଯାଇଅଛନ୍ତି । ଭାରତର ଖରସ୍ରୋତା ନଦୀରେ ସ୍ରୋତର ପ୍ରବାହରେ ପଥରରେ ଲାଖିରହିବା ପାଇଁ ମାଛ କିପରି ବିଭିନ୍ନ ଉପାୟ ଅବଲମ୍ବନ କରେ, ସେ ସମ୍ବନ୍ଧରେ ହୋରା ଉଚ୍ଚକୋଟୀର ପର୍ଯ୍ୟବେକ୍ଷଣ ଓ ଅନୁସନ୍ଧାନମୂଳକ ଲେଖା ପ୍ରକାଶ କରିଥିଲେ ।

ମାଳୟ ଉପଦ୍ୱୀପର ମଧୁର ଜଳରେ ଯେଉଁ ମାଛ ଦେଖାଯାନ୍ତି ସେଭଳି ମାଛ ଦେଖିବାକୁ ମିଳନ୍ତି ଭାରତୀୟ ଉପଦ୍ୱୀପରେ । ଅଥଚ ଏ ଦୁଇ ଅଞ୍ଚଳର ମଧ୍ୟବର୍ତ୍ତୀ ସ୍ଥାନମାନଙ୍କରେ ଏମାନେ ଦେଖାଯାନ୍ତି ନାହିଁ । ଏହା କିପରି ସମ୍ଭବ ହେଲା ସେ ସମ୍ବନ୍ଧରେ ହୋରା ୧୯୩୭ ସାଲରେ ଏକ ପ୍ରବନ୍ଧ ପ୍ରକାଶ କଲେ । ସେ ପ୍ରତିପାଦନ କଲେ ଯେ, ପୂର୍ବରୁ ପଶ୍ଚିମକୁ କେନ୍ଦ୍ରଭାରତର ସାତପୁରା ପର୍ବତମାଳା ଦେଇ ଏହି ସ୍ଥାନାନ୍ତର ଗମନ ସମ୍ଭବ ହୋଇଥିବ । ପରବର୍ତ୍ତୀ କାଳରେ ସେ ଦର୍ଶାଇଥିଲେ, କେବଳ ମଧୁର ଜଳୀୟ ମାଛ ପ୍ରତି ଏହା ଯେ ପ୍ରଯୁଜ୍ୟ ତାହା ନୁହେଁ; ମାଳୟ ଉପଦ୍ୱୀପ ଓ ଭାରତୀୟ ଉପଦ୍ୱୀପର ବୃକ୍ଷଲତା ଓ ପ୍ରାଣିକୁଳଙ୍କ ମଧ୍ୟରେ ବିଶେଷ ସାମଞ୍ଜସ୍ୟ ରହିଛି ଏବଂ ତାଙ୍କର ମତବାଦ ଏ ସମସ୍ତକୁ ମଧ୍ୟ ପ୍ରଯୁଜ୍ୟ । ଏହା ହୋରାଙ୍କ 'ସାତପୁରା ମତବାଦ' ନାମରେ ପରିଚିତ । ୧୯୪୯ ସାଲରେ ଭାରତୀୟ ଜାତୀୟ ବିଜ୍ଞାନ ଅନୁଷ୍ଠାନ (National Institute of Science of India) ଏ ସମ୍ପର୍କରେ ଏକ ଆଲୋଚନା ଚକ୍ରର ଆୟୋଜନ କରିଥିଲେ । ଏହାଫଳରେ ଅନେକ ନୂତନ ବିଷୟ ଲୋକଲୋଚନକୁ ଆସିଲା । ସେ ଯାହାହେଉ ହୋରାଙ୍କ ସାତପୁରା ମତବାଦ ଏବେ ବି ବିବଦମାନ ଓ ଅମୀମାଂସିତ ଅଛି ।

ତରୁଣ ଗବେଷକମାନଙ୍କୁ ନାନାଭାବରେ ଉତ୍ସାହ ଦେବା ଓ ସାହାଯ୍ୟ କରିବା ହୋରାଙ୍କର ଗୋଟିଏ ବଡଗୁଣ ଥିଲା । ଏହା ତାଙ୍କର ଏପରି ଦୁର୍ବଳତାରେ ପହଞ୍ଚିଥିଲା ଯେ ବେଳେ ବେଳେ ସେ ନିୟମ ବହିର୍ଭୂତ କାର୍ଯ୍ୟ କରିବସୁଥିଲେ ।

ଗବେଷଣାମୂଳକ ଲେଖା ପଠନ, ସଂଶୋଧନ ଆଦି କରିବାପାଇଁ ସେ ରେଲଗାଡିକୁ ଅପେକ୍ଷା କରିଥିଲାବେଳେ ରେଳ ଷ୍ଟେସନ ବିଶ୍ରାମାଗାରରେ ବସି ମନୋନିବେଶ କରୁଥିଲେ । ଏପରି ଘଟଣା ହୋଇଛି, ସେ ଏପରି ତନ୍ମୟ ହୋଇ କାମରେ ଲାଗିଥାନ୍ତି ଯେ, ଗାଡି ଆସି ଛାଡିଲାପରେ ଚେନ ଟାଣି ଗାଡିକୁ ଅଟକାଇ ତାଙ୍କୁ ନେଇ ଗାଡିରେ ବସାଯାଏ ।

ଉଚ୍ଚକୋଟୀର ଗବେଷଣା ଲାଗି ହୋରା ବହୁ ସମ୍ମାନର ଅଧିକାରୀ ହୋଇଥିଲେ । ସେ ବଙ୍ଗଳା ସରକାରଙ୍କ ମତ୍ସ୍ୟ ବିଭାଗର ଡାଇରେକ୍ଟର ରୂପେ କାର୍ଯ୍ୟ କରିଥିଲେ । ସେହି ପଦରୁ ଆସି ୧୯୪୭ ସାଲରେ ଭାରତୀୟ ପ୍ରାଣୀ ବିଭାଗ ସର୍ଭେର ଡାଇରେକ୍ଟର ହେଲେ । ୧୯୫୧ ମସିହାରେ ବଙ୍ଗଳାର ଏସିଆଟିକ ସୋସାଇଟି ତାଙ୍କୁ 'ଜବାହରଲାଲ ନେହେରୁ ମେଡାଲ' ଦ୍ୱାରା ସମ୍ମାନିତ କରିଥିଲେ । ୧୯୫୩-୫୪ ସାଲରେ ସେ ଭାରତୀୟ ବିଜ୍ଞାନ

କଂଗ୍ରେସର ସାଧାରଣ ସଭାପତିରୂପେ ସଭାମଣ୍ଡନ କରିଥିଲେ । ଭାରତୀୟ ପ୍ରାଣିବିଜ୍ଞାନ ସମିତିର ସେ ଜଣେ ସ୍ଥାପୟିତା ଓ ସମ୍ମାନନୀୟ ସଭ୍ୟ ଥିଲେ ଏବଂ ୧୯୪୯ରୁ ୧୯୫୧ ସାଲଯାଏ ତହିଁର ସଭାପତି ରୂପେ କାର୍ଯ୍ୟ କରିଥିଲେ । ଏହି ସମିତିର 'ସାର ଡୋରାବ ଟାଟା ସ୍ୱର୍ଣ୍ଣପଦକ' ତାଙ୍କୁ ପ୍ରଦାନ କରାଯାଇଥିଲା । ସେ ଭାରତୀୟ ଜାତୀୟ ବିଜ୍ଞାନ ସଂସ୍ଥା (National Institute of Science of India)ର ମଧ୍ୟ ସଭାପତି ଥିଲେ ।

ତାଙ୍କର କର୍ମମୟ ଜୀବନର ଅବସାନ ଘଟିଲା ଡିସେମ୍ବର ୮, ୧୯୫୫ ସାଲରେ । ପ୍ରାଣିବୈଜ୍ଞାନିକମାନେ ତାଙ୍କୁ ଏବେବି ସ୍ମରଣ କରନ୍ତି । ତାଙ୍କ ତୁଲ୍ୟ କ୍ଷେତ୍ର ଗବେଷକ ଦେଖାଯାଇନାହାନ୍ତି ଏବଂ ସାମାନ୍ୟ ପର୍ଯ୍ୟବେକ୍ଷଣକୁ ଏକ ଉଚ୍ଚକୋଟୀର ଗବେଷଣାମୂଳକ ପ୍ରବନ୍ଧରୂପ ଦେବାକୁ ତାଙ୍କ ଭଳି ଲୋକ ବାହାରିନାହାନ୍ତି ।





# ଇ. କେ. ଜାନକୀ ଆମ୍ମାଲ୍

**ଡାକ୍ତର ଅରୋ ବିଶ୍ୱବନ୍ଧ୍ୟ**

କେରଳର ତେଲିଚେରୀଠାରେ ୧୮୯୭ ମସିହାରେ ଜନ୍ମଗ୍ରହଣ କରିଥିଲେ ଇ.କେ. ଜାନକୀ ଆମ୍ମାଲ । ତାଙ୍କ ପରିବାର ମଧ୍ୟବିତ୍ତ ଥିଲେ ମଧ୍ୟ ଥିଲା ବେଶ୍ ସଂସ୍କୃତି ସମ୍ପନ୍ନ । ପିତା ଥିଲେ ମାଡ୍ରାସ୍ ପ୍ରେସିଡ଼େନ୍ସିରେ ସବ୍‌ଜଜ୍ । ଘରେ ୬ ଭାଇ, ପାଞ୍ଚ ଭଉଣୀ । ତେଲିଚେରୀରେ ସ୍କୁଲ୍ ଶିକ୍ଷା ସମାପ୍ତ କରି ଆମ୍ମାଲ୍ ମାଡ୍ରାସ୍ (ଚେନ୍ନାଇ) ସ୍ଥିତ କୁଇନ୍ ମେରୀ କଲେଜରୁ ସ୍ନାତକ ଡିଗ୍ରୀ ଏବଂ ବମ୍ବେ (ମୁମ୍ବାଇ) ସ୍ଥିତ ପ୍ରେସିଡ଼େନ୍ସି କଲେଜରୁ ୧୯୨୧ ମସିହାରେ ଉଦ୍ଭିଦ ବିଜ୍ଞାନ ଶାଖାରେ ଅନର୍ସ ଡିଗ୍ରୀ ହାସଲ କରିଥିଲେ । ତା'ପରେ ମାଡ୍ରାସର ଖ୍ରୀଷ୍ଟିଆନ୍ ମହିଳା କଲେଜ୍‌ରେ ଅଧ୍ୟାପିକା ଭାବରେ ଯୋଗଦେଇ ଚାଲିଗଲେ ଆମେରିକା ; ଆମେରିକାର ମିସିଗାନ୍ ବିଶ୍ୱବିଦ୍ୟାଳୟରେ 'ବାର୍‌ବୋର୍ ସ୍କଲାର' ରୂପେ ଯୋଗଦାନ କରି ୧୯୨୫ ମସିହାରେ ଲାଭ କରିଥିଲେ ସ୍ନାତକୋତ୍ତର ଡିଗ୍ରୀ । ତା'ପରେ ଫେରିଆସିଲେ ଭାରତ । ଖ୍ରୀଷ୍ଟିଆନ୍ ମହିଳା କଲେଜରେ ଅଧ୍ୟାପନା କରିବା ଅବସରରେ 'ଓରିଏଣ୍ଟାଲ୍ ବାରବୋର୍ ଫେଲୋସିପ୍' ପାଇ ପୁଣି ଫେରିଗଲେ ମିସିଗ. ବିଶ୍ୱବିଦ୍ୟାଳୟକୁ । ଏହି ଫେଲୋସିପ୍ ପାଇବାରେ ସେ ଥିଲେ ପ୍ରଥମ ଭାରତୀୟ । ସେଠାରେ ରହଣି କାଳରେ ୧୯୩୧ ମସିହାରେ ସେ ପ୍ରାପ୍ତ ହୋଇଥିଲେ ଡି.ଏସ୍‌ସି. ଡିଗ୍ରୀ । ଏହାପରେ ତ୍ରିଭାନ୍ଦ୍ରମ (ତିରୁବନନ୍ତପୁରମ୍)ରେ ଅବସ୍ଥିତ ମହାରାଜା ବିଜ୍ଞାନ କଲେଜ୍‌ରେ ଉଦ୍ଭିଦ ବିଜ୍ଞାନ ପ୍ରଫେସର ଭାବରେ ତାଙ୍କୁ ନିଯୁକ୍ତି ମିଳିଲା । ଏହି ପଦବୀରେ ରହି ଏବଂ ୧୯୩୨ ରୁ ୧୯୩୪ ପର୍ଯ୍ୟନ୍ତ ସେଠାରେ ଅଧ୍ୟାପନା କରି ସେ ଚାଲିଗଲେ କୋଏମ୍ବାଟୁରସ୍ଥିତ ଆଖୁ ପ୍ରଜନନ ପ୍ରତିଷ୍ଠାନ ବା ସୁଗାର୍‌କେନ୍ ବ୍ରିଡ଼ିଙ୍ଗ ଇନ୍‌ଷ୍ଟିଚ୍ୟୁଟକୁ । ସେଠାରେ ୧୯୩୪ ରୁ ୧୯୩୯ ମସିହା ଯାଏ ସେ ଜଣେ ଅନୁବଂଶ ବିଜ୍ଞାନୀ ଭାବରେ କାର୍ଯ୍ୟନିର୍ବାହ କରି ଆସିଥିଲେ । ଏହାପରେ ସେ ଚାଲିଗଲେ ଲଣ୍ଡନ୍ । ଲଣ୍ଡନ୍‌ର ଜନ୍ ଇନେସ୍ ହର୍ଟିକଲ୍‌ଚରାଲ୍

ଇନ୍‌ଷ୍ଟିଚ୍ୟୁସନ୍‌ରେ ସହକାରୀ କୋଷିକା ବିଜ୍ଞାନୀ (ସାଇଟୋଲୋଜିଷ୍ଟ) ପଦବୀରେ ୧୯୪୦ ରୁ ୧୯୪୫ ପର୍ଯ୍ୟନ୍ତ ରହି ୧୯୪୫ ରୁ ୧୯୫୧ ପର୍ଯ୍ୟନ୍ତ ଉଇସ୍‌ଲିଠାରେ ଅବସ୍ଥିତ ରୟାଲ୍ ହର୍ଟିକଲ୍‌ଚରାଲ୍ ସୋସାଇଟୀରେ କୋଷିକା ବିଜ୍ଞାନୀ ଭାବରେ ନିଯୁକ୍ତି ପାଇଥିଲେ ।

ଏହି ସମୟରେ, ୧୯୫୧ ମସିହାରେ, ତଦାନୀନ୍ତନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କ ନିମନ୍ତ୍ରଣକ୍ରମେ ସେ ଭାରତକୁ ଫେରି ଆସିଲେ । ଭାରତରେ 'ବଟାନିକାଲ ସର୍ଭେ ଅଫ୍ ଇଣ୍ଡିଆ' ବା ଭାରତୀୟ ଉଦ୍ଭିଦ ବିଜ୍ଞାନ ସର୍ବେକ୍ଷଣ ସଂସ୍ଥାକୁ ପୁନର୍ଗଠନ କରିବାର ଦାୟିତ୍ୱ ଦିଆଗଲା ତାଙ୍କୁ । ଏହାପରଠାରୁ ସେ ହୋଇଗଲେ ସରକାରଙ୍କର ଜଣେ କର୍ମଚାରୀ ।

ଏଠାରେ ବିଭିନ୍ନ ପଦପଦବୀରେ କାର୍ଯ୍ୟ ନିର୍ବାହ କରି ଆଲାହାବାଦସ୍ଥିତ ସେଣ୍ଟ୍ରାଲ ବୋଟାନିକାଲ୍ ଲାବୋରେଟୋରୀ ବା କେନ୍ଦ୍ରୀୟ ଉଦ୍ଭିଦବିଜ୍ଞାନ ଗବେଷଣାଗାରର ମୁଖ୍ୟ ରୂପେ ଅଧିଷ୍ଠିତା ହେଲେ ଆମ୍ମାଲ୍ । ଏହା ସାଙ୍ଗକୁ ଜାମ୍ମୁରେ ଅବସ୍ଥିତ ଆଞ୍ଚଳିକ ଗବେଷଣାଗାର ବା ରିଜିଓନାଲ୍ ରିସର୍ଚ୍ଚ ଲାବୋରେଟୋରୀର ସ୍ୱତନ୍ତ୍ର କାର୍ଯ୍ୟନିର୍ବାହୀ (ଅଫିସର ଅନ୍ ସ୍ପେଶିଆଲ୍ ଡ୍ୟୁଟି) ଭାବରେ ମଧ୍ୟ ସେ କାର୍ଯ୍ୟ ସମ୍ପାଦନ କରିଥିଲେ । ୧୯୭୦ ମସିହା ନଭେମ୍ବର ମାସରେ ମାଡ୍ରାସ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ବିଭାଗ ଅନ୍ତର୍ଗତ ସେଣ୍ଟର୍ ଫର୍ ଆଡ୍‌ଭାନ୍ସଡ୍ ଷ୍ଟଡ଼ିରେ ଏମେରିଟସ୍ ପ୍ରଫେସର ପଦବୀରେ ଯୋଗ ଦେବା ପୂର୍ବରୁ ଆମ୍ମାଲ୍ ମଧ୍ୟ ସ୍ୱଳ୍ପ ସମୟ ପାଇଁ କାର୍ଯ୍ୟ କରିଥିଲେ ଟମ୍ବେସ୍ଥିତ ଭାଭା ପରମାଣୁ ଗବେଷଣା କେନ୍ଦ୍ରରେ । 'ସେଣ୍ଟର୍ ଫର୍ ଆଡଭାନ୍ସଡ୍ ଷ୍ଟଡ଼ି ଇନ୍ ବଟାନୀ'ର କ୍ଷେତ୍ର-ଗବେଷଣାଗାର ଅବସ୍ଥିତ ଥିଲା ଚେନ୍ନାଇ ନିକଟସ୍ଥ ମଦୁରାଭୋୟାଲ୍ ନାମକ ସ୍ଥାନରେ । ଜାନକୀ ଆମ୍ମାଲ୍ ସେହି ସ୍ଥାନରେ ଅବସ୍ଥାନ କରି ୧୯୮୪ ମସିହା ଫେବୃଆରୀ ମାସରେ ମୃତ୍ୟୁବରଣ କରିବା ପର୍ଯ୍ୟନ୍ତ ଗବେଷଣାରତ ରହି ଆସିଥିଲେ ।

ତାଙ୍କୁ ୧୯୩୫ ମସିହାରେ ଇଣ୍ଡିଆନ୍ ଏକାଡ଼େମୀ ଅଫ୍ ସାଇନ୍ସ ଓ ୧୯୫୭ ମସିହାରେ ଇଣ୍ଡିଆନ୍ ନେସନାଲ୍ ସାଇନ୍ସ ଏକାଡ଼େମୀର ଫେଲୋ ରୂପେ ନିର୍ବାଚନ କରାଯାଇଥିଲା । ୧୯୫୬ ମସିହାରେ ମିସିଗାନ୍ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ତାଙ୍କୁ ସମ୍ମାନଜନକ ଏଲ୍.ଏଲ୍.ଡ଼ି. ଉପାଧିରେ ଭୂଷିତ କରାଯାଇଥିଲା । ଭାରତ ସରକାର ତାଙ୍କୁ ପଦ୍ମଶ୍ରୀ ସମ୍ମାନରେ ସମ୍ମାନିତ କରିଥିଲେ ୧୯୫୭ ମସିହାରେ । ଭାରତ ସରକାରଙ୍କ ପରିବେଶ ଓ ଜଙ୍ଗଲ ମନ୍ତ୍ରାଳୟ ୨୦୦୦ ମସିହାରେ ଆମ୍ମାଲ୍‌ଙ୍କ ସ୍ମୃତିରେ ପ୍ରତିଷ୍ଠା କରିଛନ୍ତି

ଜୀବ ବର୍ଗୀକରଣ ସଂକ୍ରାନ୍ତ ଜାତୀୟ ପୁରସ୍କାର (ନେସନାଲ୍ ଆୱାର୍ଡ଼ ଅଫ୍ ଟାକ୍ସୋନୋମି) ।

ଆମ୍ମାଲ୍ ପ୍ରଥମେ ଅଧ୍ୟାପନା ବୃତ୍ତିକୁ ଗ୍ରହଣ କରି ନେଇଥିଲେ ମଧ୍ୟ ପରେ ମନୋନିବେଶ କରିଥିଲେ ଗବେଷଣାରେ । ମିସିଗାନ ବିଶ୍ୱବିଦ୍ୟାଳୟରେ ଦୁଇଥରର ରହଣି କାଳରେ ଉଦ୍ଭିଦ ବିଜ୍ଞାନ ଶାଖାର କେଉଁ କ୍ଷେତ୍ରଟିରେ ସେ ବିଶେଷ ଜ୍ଞାନ ଅର୍ଜନ କରିବେ ତାହା ନିର୍ଦ୍ଧାରିତ ହୋଇଗଲା । ଗବେଷଣା ପାଇଁ ସେ ନିର୍ବାଚନ କରିଥିଲେ କୋଷିକା ବିଜ୍ଞାନ ବା ସାଇଟୋଲୋଜି କ୍ଷେତ୍ରକୁ । ସେତେବେଳେ ଏହି କ୍ଷେତ୍ରଟି ବିଶେଷ ବିକାଶ ଲାଭ କରିନଥାଏ । ଗବେଷକମାନଙ୍କର ଦୃଷ୍ଟି କେନ୍ଦ୍ରିତ ହୋଇଥାଏ କୋଷିକାର ନ୍ୟଷ୍ଟି (ନ୍ୟୁକ୍ଲିୟସ୍) ଏବଂ ଗୁଣସୂତ୍ର (କ୍ରୋମୋଜୋମ୍) ଉପରେ । ତଥାପି ବିଂଶ ଶତାବ୍ଦୀର ଆଦ୍ୟ ଦଶକଗୁଡ଼ିକ ଥିଲା ଅନୁବଂଶବିଜ୍ଞାନର ଉଷାକାଳ । ବିଶେଷକରି ଗହମ ଓ ଆଖୁ ଉପରେ ଅଧିକ ଗବେଷଣା ଚାଲିଥିଲା ।

ବିଗତ ଶତାବ୍ଦୀର ପ୍ରଥମ କେଇ ଦଶନ୍ଧି ଭିତରେ ସି.ଏ. ବାର୍‌ବର ଏବଂ ଟି.ଏସ୍. ଭେଙ୍କଟରାମନ୍ କୋଏମ୍ବାଟୁର୍‌ରେ ଥିବା ଆଖୁ ପ୍ରଜନନ ପ୍ରତିଷ୍ଠାନରେ ଆଖୁର ପ୍ରଜନନ ପାଇଁ ଗବେଷଣାର ସୂତ୍ରପାତ କରିଥିଲେ । ଭେଙ୍କଟରାମନ୍ ଉଦ୍ଭାବନ କରିଥିଲେ ମରୁଡ଼ି ବିରୋଧୀ ତଥା ରୋଗ ବିରୋଧୀ ଏକ ନୂତନ ଜାତିର ଆଖୁ । ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ସେହି ଆଖୁକୁ 'କୋଏମ୍ବାଟୁର କେନ୍' ବା କୋ'୪୧୯ (Co419) ଭାବରେ ନାମିତ କରାଯାଇଥିଲା । ଅଳ୍ପ ଦିନ ଭିତରେ ଏହା ଚାଷୀମାନଙ୍କଠାରେ ଆଦୃତି ଲାଭ କରି ଭାରତର ପ୍ରତ୍ୟେକ ରାଜ୍ୟରେ ବହୁଳ ଭାବରେ ଚାଷ କରାଗଲା । ଏପରିକି ଆଖୁ ଉତ୍ପାଦନକାରୀ ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ରଗୁଡ଼ିକ ମଧ୍ୟ ଏହାକୁ ଗ୍ରହଣ କରିନେଲେ ।

ଠିକ୍ ଏହି ଘଡ଼ିସନ୍ଧି ସମୟରେ ଆମ୍ମାଲ୍ ତିରୁବନନ୍ତପୁରମ୍‌ରେ ନିଜର ଅଧ୍ୟାପନା ବୃତ୍ତିକୁ ପରିତ୍ୟାଗ କରି କୋଏମ୍ବାଟୁରରେ ଆଖୁ ପ୍ରଜନନ ପ୍ରତିଷ୍ଠାନରେ ଯୋଗ ଦେଲେ । ସେଠାରେ ସେ ବିକଶିତ କରାଇପାରିଥିଲେ କେତେକ ଆନ୍ତର୍ଜିନୀୟ ସଙ୍କର : ଆଖୁ ଓ ମକା, ଆଖୁ ଓ ଜନ୍‌ହା ବା ସୋର୍‌ଗମ୍, ଆଖୁ ଓ ଇମ୍ପେରାଟା (Saccharum x Imperata) ଏବଂ ଆଖୁ ଓ ଏରିଆନ୍ଥସ୍ (Saccharum x Erianthus) ମଧ୍ୟରେ ମିଳନ ଘଟାଇ ସେହିସବୁ ସଙ୍କର ଉଦ୍‌ଭାବିତ ହୋଇଥିଲା । ଆଖୁ, ଆଖୁ ଜାତୀୟ ଅନ୍ୟାନ୍ୟ ଘାସ ଓ ବାଉଁଶ ଇତ୍ୟାଦିର କୋଷିକୀୟ ଅନୁବଂଶ ଅନୁଧ୍ୟାନ କରିବାରେ ତାଙ୍କର ଅବଦାନ ଥିଲା ଯୁଗାନ୍ତକାରୀ । କିନ୍ତୁ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଆମ୍ମାଲ୍‌ଙ୍କର ମୂଳଦୁଆ

ପଡ଼ିଥିଲା ସେହି ଆଖୁ ପ୍ରଜନନ ପ୍ରତିଷ୍ଠାନରେ । ୧୯୩୯ ରୁ ୧୯୫୦ ପର୍ଯ୍ୟନ୍ତ ସେ କଟେଇଥିଲେ ଲଣ୍ଡନ୍‌ରେ । ସେଠାରେ ସେ ବିଭିନ୍ନ ଉଦ୍ୟାନ ଉଦ୍ଭିଦ ବା ଗାର୍ଡ଼େନ୍ ପ୍ଲାଣ୍ଟର୍ ଗୁଣସୂତ୍ର ଅନୁଧ୍ୟାନ ଉପରେ ବିଶେଷ ମନୋନିବେଶ କରିଥିଲେ । ଗୁଣସୂତ୍ରର ସଂଖ୍ୟା ତଥା ଗୁଣସୂତ୍ରଗୋଷ୍ଠୀ (ପ୍ଲଏଡ଼ି) ଉପରେ ସେ ଯେଉଁ ଅନୁଧ୍ୟାନମାନ କରିଥିଲେ ତାହା ବିଭିନ୍ନ ଜାତିର ଉଦ୍ଭିଦର ବିବର୍ତ୍ତନ ଉପରେ ଯଥେଷ୍ଟ ଆଲୋକପାତ କରିପାରିଥିଲା । ୧୯୪୫ ମସିହାରେ ସି.ଡ଼ି. ଡାର୍‌ଲିଙ୍ଗଟନ୍ (C. D. Darlington)ଙ୍କ ସହ ମିଶି ସେ ପ୍ରଣୟନ କରିଥିଲେ 'ଦ କ୍ରୋମୋଜୋମ୍ ଆଟ୍‌ଲାସ୍ ଅଫ୍ କଲ୍‌ଟିଭେଟେଡ୍ ପ୍ଲାଣ୍ଟ୍' ବା 'କୃଷି ଉପଯୋଗୀ ଉଦ୍ଭିଦଗୁଡ଼ିକର ଗୁଣସୂତ୍ର ମାନଚିତ୍ର ।' ଏହି ପୁସ୍ତକଟି ଉଦ୍ଭିଦ ବିଜ୍ଞାନରେ ଏକ ପ୍ରାମାଣିକ ଗ୍ରନ୍ଥ ରୂପେ ସ୍ୱୀକୃତ ।

ବହୁଗୁଣିତା ବା 'ପଲିପ୍ଲଏଡ଼ି' ଏବଂ ଉଦ୍ଭିଦର ବିବର୍ତ୍ତନ ସଂପର୍କରେ ସେ ଅନୁଧ୍ୟାନର ଯେଉଁ ମୂଳଦୁଆ ପକେଇଥିଲେ ତାହାର ଅଧିକତର ବିକାଶ କରେଇ ପାରିଥିଲେ ଭାରତରେ । ଭାରତରେ ଆଳୁ, ଦୁଦୁରା, ପୁଦିନା, ଓଲୁଅ, ଦେଶୀ ଆଳୁ, ଆଦି ଉଦ୍ଭିଦ ଉପରେ ତାଙ୍କର ଗବେଷଣା ଅବ୍ୟାହତ ରହିଲା । ତାହାଛଡ଼ା ଅନେକ ଔଷଧୀୟ ଉଦ୍ଭିଦର ଗୁଣସୂତ୍ର ସଂଖ୍ୟା ଇତ୍ୟାଦି ସେ ନିର୍ଦ୍ଧାରଣ କରିଥିଲେ । ସେ ଯେତେ ସଂଖ୍ୟକ ଉଦ୍ଭିଦ ଉପରେ ଅନୁଧ୍ୟାନ କରିଥିଲେ ତାହା ଏତେ ଅଧିକ ଯେ ଗୋଟି ଗୋଟି କରି ସେଗୁଡ଼ିକର ନାମ ଉଲ୍ଲେଖ କରିବା କଷ୍ଟକର ।

ଆମ୍ମାଲଙ୍କଠାରେ ଗବେଷଣା ଆଧାରିତ ଚିନ୍ତାଭାବନା ଥିଲା ସମ୍ପୂର୍ଣ୍ଣ ମୌଳିକ । ସେ ଉଲ୍ଲେଖ କରିଥିଲେ ଯେ ଶୀତଳ ଏବଂ ଆର୍ଦ୍ର ଉତ୍ତରପୂର୍ବ ହିମାଳୟ ପାର୍ବତ୍ୟାଞ୍ଚଳ ଏବଂ ଶୀତଳ ତଥା ଶୁଷ୍କ ଉତ୍ତରପଶ୍ଚିମ ହିମାଳୟ ପାର୍ବତ୍ୟାଞ୍ଚଳର ଉଦ୍ଭିଦ ଜାତିରେ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ ପଲିପ୍ଲଏଡ଼ି ବା ଗୁଣସୂତ୍ରର ବହୁଗୁଣିତା ହିଁ ଏହାର ପ୍ରଧାନ କାରଣ । ସେ ମତ ଦେଇଥିଲେ ଯେ ଉତ୍ତରପୂର୍ବ ଭାରତର ଉଦ୍ଭିଦରାଜିରେ ଯେଉଁ ପ୍ରଭେଦ ଦେଖା ଯାଉଛି ତାହା ଚୀନ୍ ଓ ମାଳୟରେ ଦେଖାଯାଉଥିବା ଉଦ୍ଭିଦ ଓ ସ୍ଥାନୀୟ ଉଦ୍ଭିଦର ପ୍ରାକୃତିକ ସଂକରୀକରଣ ଦ୍ୱାରା ସୃଷ୍ଟ ଏବଂ ତାହା ହିଁ ଉଦ୍ଭିଦର ବିବିଧତା ପାଇଁ ଦାୟୀ ।

ଅବସର ଗ୍ରହଣ ପରେ ଆମ୍ମାଲ ନିଜର ଗବେଷଣାକାର୍ଯ୍ୟ ଅବ୍ୟାହତ ରଖିଥିଲେ । ବିଶେଷ କରି ଔଷଧୀୟ ଉଦ୍ଭିଦ ଓ ମାନବଜାତି ଉଦ୍ଭିଦବିଜ୍ଞାନ ବା 'ଏଥ୍‌ନୋବୋଟାନୀ' ଉପରେ ହିଁ ପର୍ଯ୍ୟବସିତ ଥିଲା ତାଙ୍କର ଗବେଷଣା । ତାଙ୍କର ଗବେଷଣା ପ୍ରବନ୍ଧମାନ ଜାତୀୟ ଏବଂ ଅନ୍ତର୍ଜାତୀୟ ବିଜ୍ଞାନ ପତ୍ରିକାମାନଙ୍କରେ ପ୍ରକାଶ ପାଇ ଆସୁଥିଲା ।

ମଦୁରାଭୋୟାଲ୍‌ସ୍ଥିତ ଯେଉଁ କ୍ଷେତ୍ର - ଗବେଷଣାଗାରରେ ସେ ରହୁଥିଲେ, ସେଠାରେ ବିକଶିତ କରାଇଥିଲେ ଏକ ଅତି ଉନ୍ନତ ଔଷଧୀୟ ଉଦ୍ଭିଦର ଉଦ୍ୟାନ । ଯଦିଓ କୋଷିକା ବିଜ୍ଞାନ କ୍ଷେତ୍ରପ୍ରତି ସେ ବିଶେଷ ଭାବରେ ଆକୃଷ୍ଟ ଥିଲେ, ଅନୁବଂଶ ବିଜ୍ଞାନ, ବିବର୍ତ୍ତନ ବିଜ୍ଞାନ, ଉଦ୍ଭିଦ - ଭୂଗୋଳ ବା ଫାଇଟୋଜିଓଗ୍ରାଫି ଏବଂ ଏଥିନୋବୋଟାନୀ ଶାଖାରେ ମଧ୍ୟ ବେଶ୍ କିଛି ଅନୁଧ୍ୟାନ କରିଥିଲେ ସେ ।

କହିବାକୁ ଗଲେ ଜାନକୀ ଆମ୍ମାଲ ପିଲାବେଳୁ ଗଛଲତାଙ୍କ ପ୍ରେମରେ ପଡ଼ିଯାଇଥିଲେ ଏବଂ ଆଜୀବନ ସେମାନଙ୍କ ଗହଣରେ ହିଁ ରହିଆସିଥିଲେ । କୃଷି ଉପଯୋଗୀ ଉଦ୍ଭିଦ, ଉଦ୍ୟାନ ଉପଯୋଗୀ ଉଦ୍ଭିଦ, ଔଷଧୀୟ ବୃକ୍ଷଲତା, ବଣ ଜଙ୍ଗଲରେ ବଣୁଆ ଭାବରେ ବଢ଼ିଆସୁଥିବା ଓ ଔଷଧଗୁଣ ବହନ କରିଥିବା ଗଛଲତା, ଆଦିବାସୀ ସଂପ୍ରଦାୟଙ୍କ ପରିଚିତ ଉଦ୍ଭିଦରାଜି - ସବୁକିଛି ଥିଲେ ତାଙ୍କ ଆକର୍ଷଣର କେନ୍ଦ୍ର । ଯେଉଁ ଗଛଲତା ତାଙ୍କର ଆଖିରେ ପଡୁଥିଲା ତା' ବିଷୟରେ ସେ ଆରମ୍ଭ କରିଦେଉଥିଲେ ପୁଙ୍ଖାନୁପୁଙ୍ଖ ଗବେଷଣା । ବ୍ରିଟେନ୍‌ରେ ଥିବାବେଳେ ସେଠାକାର ବୃକ୍ଷଲତା ଓ ଭାରତକୁ ଫେରି ଆସିବାପରେ ଏଠାକାର ବୃକ୍ଷଲତା - ଏହି ସମସ୍ତଙ୍କ ସହ ବୈଜ୍ଞାନିକ ସମ୍ପର୍କ ସ୍ଥାପନ କରିବାରେ ବ୍ରତୀ ଥିଲେ ଆମ୍ମାଲ୍ ।

ଜାନକୀ ଆମ୍ମାଲ୍ ବିବାହ କରି ନଥିଲେ । ଉଚ୍ଚ ଚିନ୍ତନ ଓ ସରଳ ଜୀବନ ଯାପନର ପୂଜାରିଣୀ ଥିଲେ ସେ । ଚଳୁଥିଲେ ଅତି ନିରାଡ଼ମ୍ବର ଭାବରେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ଥିଲେ ବ୍ରିଟେନ୍‌ରେ । ସେଠାରେ ତାଙ୍କ ଜୀବନ ଥିଲା ଦୁର୍ବିସହ । ତଥାପି ଗବେଷଣା କାର୍ଯ୍ୟରେ ସେ ଆଦୌ ଅବହେଳା କରିନଥିଲେ ।

ନିଜର ପରିଧାନ ଓ ଚଳଣିରେ ଆମ୍ମାଲ୍ ଥିଲେ ସଂପୂର୍ଣ୍ଣ ଭାରତୀୟ । ଥିଲେ ନିଃସ୍ୱାର୍ଥପର । ଥିଲେ ଗାନ୍ଧୀବାଦୀ । ସେ କାହାରି ଅନୁଗ୍ରହ ଭିକ୍ଷା କରି ନଥିଲେ କି ପ୍ରଚାରଧର୍ମୀ ନଥିଲେ । ସମ୍ମାନ ଓ ପ୍ରତିଷ୍ଠା ଆପଣା ଛାଏଁ ତାଙ୍କ ପାଖରେ ପହଞ୍ଚୁଥିଲା । ୧୯୫୬ ମସିହାରେ ତାଙ୍କୁ ସମ୍ମାନସୂଚକ ଏଲ୍.ଏଲ୍.ଡି. ଉପାଧି ଦେବା ଅବସରରେ ମିସିଗାନ ବିଶ୍ୱବିଦ୍ୟାଳୟ ଲେଖିଥିଲା, ''ଜାନକୀ ଆମ୍ମାଲ୍ ଥିଲେ କଷ୍ଟସହିଷ୍ଣୁ, ଗବେଷଣାରେ ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ, ପର୍ଯ୍ୟବେକ୍ଷଣରେ ତ୍ରୁଟିଶୂନ୍ୟ ଓ ତଥ୍ୟ ପରିବେଷଣରେ ସଚ୍ଚୋଟ । ଗବେଷଣାବ୍ରତୀ ପ୍ରତ୍ୟେକ ବିଜ୍ଞାନୀଙ୍କ ପାଇଁ ସେ ଏକ ଆଦର୍ଶ ।''

ବାସ୍ତବରେ ଜାନକୀ ଆମ୍ମାଲ ଥିଲେ ନୀତିନିଷ୍ଠ ଏବଂ ବିଜ୍ଞାନ ପ୍ରତି ଅତିମାତ୍ରାରେ ଆସକ୍ତ । ତାଙ୍କର ଜୀବନ ଓ କାର୍ଯ୍ୟଧାରା ନିଶ୍ଚିତ ଭାବରେ ଅନୁକରଣୀୟ ।





# କେ. ଏସ୍. କ୍ରିଷ୍ଣାନ୍

ପ୍ରଫେସର ଡକ୍ଟର୍ କୁଳମଣି ସାମଲ

ତାଙ୍କର ସଂକ୍ଷିପ୍ତ ନାମ ସାର୍ କେ. ଏସ୍. । ପୁରା ନାମ ହେଲା କରିଆ ମାନିକମ୍ ଶ୍ରୀନିବାସ କ୍ରିଷ୍ଣାନ୍ । ବାହାର ଲୋକେ ଜାଣନ୍ତି, ସେ ଜଣେ ବିଶିଷ୍ଟ ବୈଜ୍ଞାନିକ, ଉଚ୍ଚକୋଟୀର ପଦାର୍ଥବିତ୍ । ସ୍ଫଟିକ, ତରଳ, ଆଲୋକ ବିଚ୍ଛୁରଣ, ପଦାର୍ଥ ମଧ୍ୟରେ ଅଣୁର ସାଜସଜ୍ଜା, ଧାତୁ ଓ ମିଶ୍ରଧାତୁ ଭିତରେ ଥିବା ଇଲେକ୍‌ଟ୍ରନ୍ ଗ୍ୟାସରେ ଶକ୍ତି ବିତରଣ ସମ୍ପର୍କରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା; କିନ୍ତୁ ଯେଉଁମାନେ ତାଙ୍କ ପାଖରେ ପଢ଼ିଛନ୍ତି, ଗବେଷଣା କରିଛନ୍ତି, ତାଙ୍କ ସହିତ ମିଳିମିଶି ଚଳିଛନ୍ତି, ସେମାନେ କହନ୍ତି ସେ କେବଳ ଜଣେ ବୈଜ୍ଞାନିକ ନଥିଲେ; ଥିଲେ ଜଣେ ପରିପୂର୍ଣ୍ଣ ବ୍ୟକ୍ତି । ସେ କ'ଣ ଜାଣି ନଥିଲେ ! ଇତିହାସ, ଦର୍ଶନ, ସାହିତ୍ୟ, ଧର୍ମ, ସଂସ୍କୃତି ଓ ବିଜ୍ଞାନ ଯେଉଁ ବିଷୟ ହେଲେ ବି ସେଥିରେ ଆଲୋଚନା କରି ପାରୁଥିଲେ ସେ ।

ପଣ୍ଡିତ ନେହରୁଙ୍କୁ ତାଙ୍କ ଜନ୍ମଦିନରେ ଭାଷଣ ଦେବାକୁ ଅନୁରୋଧ କରାଗଲା । ସେ କହିଲେ, "କ୍ରିଷ୍ଣାନଙ୍କୁ ମୁଁ ଯେତେଥର ଭେଟିଛି ସେତେଥର ତାଙ୍କଠାରୁ କିଛି ହେଲେ ନୂଆ କଥା ଶୁଣିଛି । ସେ କେବଳ ଜଣେ ବୈଜ୍ଞାନିକ ନୁହନ୍ତି, ଦେଶର ଜଣେ ସୁନାଗରିକ ଓ ପରିପୂର୍ଣ୍ଣ ବ୍ୟକ୍ତି ବା ସମନ୍ୱିତ ବ୍ୟକ୍ତିତ୍ୱର ଆଧାର ।"

ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ନେତା ଜବାହାରଲାଲ ନେହରୁଙ୍କୁ ଯିଏ ସବୁଥର କିଛି ନୂଆ ନୂଆ କଥା ଶୁଣାଉଥିଲେ ତାଙ୍କ ଜନ୍ମ ତାମିଲନାଡୁର ଗୋଟିଏ ଗାଁରେ । ଗାଁ ନାଁ ୱାଟରାପ୍, ଜିଲ୍ଲା - ତିରୁ ନେଲଭେଲି । ତାଙ୍କ ବାପା ଥିଲେ ଜଣେ ବ୍ରାହ୍ମଣ କୃଷକ । ତାଙ୍କ ବାପା ତାମିଲ ଓ ସଂସ୍କୃତ ଭଲଭାବେ ଜାଣିଥିଲେ, ଧର୍ମଶାସ୍ତ୍ର ଚର୍ଚ୍ଚା କରୁଥିଲେ ଓ ତୀର୍ଥ ଯାତ୍ରାରେ ଯିବାକୁ ଖୁବ୍ ପସନ୍ଦ କରୁଥିଲେ । ପୁଅଙ୍କ ଉପରେ ତା'ର ପ୍ରଭାବ ପଡ଼ିଥିଲା ।

କ୍ରିଷ୍ଣାନ୍‌ଙ୍କୁ ଷାଠିଏ ପୂରିଲାବେଳେ ପଚରା ହେଲା ଆପଣ କ'ଣ ଭଲ ପାଆନ୍ତି ? ସେ ସଙ୍ଗେ ସଙ୍ଗେ କହିଥିଲେ — ତିନୋଟି ଟି (T), ଅର୍ଥାତ୍ ତାମିଲ (Tamil), ଟେନିସ (Tennis) ଓ ଭ୍ରମଣ (Travel) । ପହିଲୁ ପହିଲୁ ସେ ତାଙ୍କ ଗବେଷଣା ପତ୍ରମାନ ତାମିଲରେ ଲେଖୁଥିଲେ । ତାଙ୍କ ମତରେ ଆମ ଜାତୀୟତାର ବିକାଶ ସହିତ ଭାରତୀୟ ଭାଷାର ଉନ୍ନତି ଜଡ଼ିତ ।

ସାର୍ କେ. ଏସ୍. ଗାଁ ସ୍କୁଲରେ ପଢ଼ିଲାବେଳେ ଲେଖନ ଧରି ଦିନକୁ ୨/୩ ଖଣ୍ଡ ତାଳପତ୍ର ଲେଖୁଥିଲେ । ଏମିତି ଲେଖି ଲେଖି ବର୍ଷକ ମଧ୍ୟରେ ସେ ଖଣ୍ଡିଏ ବିରାଟ ପୋଥି ଲେଖିଥିଲେ । ସେଥିରେ ନକ୍ଷତ୍ର ପୁଞ୍ଜ ଓ ରାଶିର ଅବସ୍ଥାନ ଓ ସମୟ ଜାଣିବା ପାଇଁ ଅନେକ ସୂତ୍ର ରହିଥିଲା । ଗାଁ ସ୍କୁଲରୁ ପାଶ୍ କରି ସେ ଆମେରିକୀୟଙ୍କ ଦ୍ୱାରା ପ୍ରତିଷ୍ଠିତ ମଦୁରା କଲେଜରେ ପଢ଼ିଲେ । ସେଠୁ ପାଶ୍ କଲାପରେ ମାନ୍ଦ୍ରାଜର ଖ୍ରୀଷ୍ଟିୟାନ୍ କଲେଜରେ ପଢ଼ି ପଦାର୍ଥ ବିଜ୍ଞାନରେ ଡିଗ୍ରୀ ହାସଲ କଲେ । କିନ୍ତୁ ତାଙ୍କୁ ସେହି ମାନ୍ଦ୍ରାଜ କଲେଜରେ ରସାୟନ ବିଜ୍ଞାନରେ ଡିମୋନ୍‌ଷ୍ଟ୍ରେଟର ହେବା ପାଇଁ ନିଯୁକ୍ତି ମିଳିଲା ।

ମାତ୍ର ଅଳ୍ପ କେତେ ମାସ ଅଧ୍ୟାପନା କଲାପରେ ତାଙ୍କ ନିଷ୍ଠା, ଆଗ୍ରହ ଓ ଦକ୍ଷତା ଦ୍ୱାରା ସେ ଛାତ୍ରମାନଙ୍କୁ ଆପଣାର କରିନେଲେ । ମଧ୍ୟାହ୍ନ ଭୋଜନ ବିରତିବେଳେ ତାଙ୍କୁ ଆଉ ବିଶ୍ରାମ ମିଳିଲା ନାହିଁ । ସନ୍ଦେହ ମୋଚନପାଇଁ ନାନା ପ୍ରକାର ପ୍ରଶ୍ନ ଧରି ଛାତ୍ରମାନେ ତାଙ୍କ ପାଖରେ ରୁଣ୍ଡ ହେଲେ । ଗଣିତ, ପଦାର୍ଥ ବିଜ୍ଞାନ ଓ ରସାୟନ ଶାସ୍ତ୍ର କୌଣସି ବିଷୟ ଆଲୋଚନାରୁ ବାଦ୍ ପଡ଼ିଲା ନାହିଁ । ବକ୍ତୃତା କକ୍ଷ ଭରପୂର ହୋଇଗଲା । କେବଳ ସେଇ କଲେଜରୁ ନୁହେଁ, ପାଖଆଖ ଅନ୍ୟାନ୍ୟ କଲେଜରୁ ଛାତ୍ରମାନେ ମଧ୍ୟ ଆସି ଆଲୋଚନାରେ ଯୋଗ ଦେଲେ । ଆନ୍ଧ୍ର ବିଶ୍ୱବିଦ୍ୟାଳୟ କଲେଜର ଜଣେ ଅଧ୍ୟକ୍ଷ କହନ୍ତି — ଶ୍ରେଣୀ ଗୃହର ନିୟମିତ ବକ୍ତୃତା ଅପେକ୍ଷା ସେ ସେହି ମଧ୍ୟାହ୍ନ ଆଲୋଚନାରୁ ଅଧିକ ଶିଖୁଥିଲେ । ବାସ୍ତବିକ ଏ ପୃଥିବୀରେ ଅନେକ ଲୋକ ବହୁତ କଥା ଜାଣନ୍ତି; କିନ୍ତୁ ସହଜ, ସରଳ ଓ ପ୍ରାଞ୍ଜଳଭାବେ ବୁଝେଇ ଜାଣନ୍ତି ଖୁବ୍ କମ୍ ଲୋକ । କେ. ଏସ୍. କ୍ରିଷ୍ଣାନ୍ ଥିଲେ ସେପ୍ରକାର ଅଳ୍ପ ଲୋକଙ୍କ ମଧ୍ୟରୁ ଜଣେ ।

ଆଉ ଥରକର ଘଟଣା । ୧୯୨୮ ମସିହା, ସେତେବେଳକୁ କ୍ରିଷ୍ଣାନ୍ କଲିକତା ଆସିଲେଣି । ସାର ସି. ଭି. ରାମନ୍‌ଙ୍କର ସେ ଗବେଷଣା ସହଯୋଗୀ । ବିଶ୍ୱବିଖ୍ୟାତ ରାମନ୍ ସିଦ୍ଧାନ୍ତ ପ୍ରତିଷ୍ଠିତ ହେବା ଉପରେ । ରାମନ୍ ସିଦ୍ଧାନ୍ତର ପ୍ରଚ୍ଛଦପଟ କଳାକାର ହେଉଛନ୍ତି ଏହି କର୍ମଯୋଗୀ କ୍ରିଷ୍ଣାନ୍ । ସ୍ୱନାମଧନ୍ୟ ଜର୍ମାନ ପ୍ରଫେସର ଏ. ସମରଫିଲ୍ଡ଼

ନିମନ୍ତ୍ରିତ ହୋଇ କଲିକତା ଆସିଥାନ୍ତି । ସେ ସମୟରେ ନୂତନ ହୋଇ ପ୍ରତିଷ୍ଠିତ ହେଉଥିବା ତରଙ୍ଗ ଗତି ବିଜ୍ଞାନର ଆଧୁନିକ ବିକାଶ ଉପରେ ସେ ସାତଟି ବକ୍ତୃତା ପ୍ରଦାନ କଲେ । କଲିକତା ବିଶ୍ୱବିଦ୍ୟାଳୟ ତାଙ୍କ ବକ୍ତୃତାକୁ ପୁସ୍ତକ ରୂପେ ପ୍ରକାଶ କରିବାକୁ ସ୍ଥିର କଲା । କିନ୍ତୁ ଏ ନୂଆ ପାଠକୁ ଟିପିବ କିଏ ? କ୍ରିଷ୍ଣାନ୍ ତାହାର ଦାୟିତ୍ୱ ନେଲେ । ସେଇ ୭ଟି ବକ୍ତୃତା ସଙ୍ଗେ ସେ ଆଉ ପାଞ୍ଚଟି ବକ୍ତୃତାର ପାଠ ଯୋଖି ଦେଲେ । ସେଥିରେ ଥିବା ଗାଣିତିକ ପ୍ରମାଣମାନଙ୍କରେ କ୍ରିଷ୍ଣାନ୍‌ଙ୍କ ମୌଳିକତା ଫୁଟିଉଠୁଥିଲା । ବକ୍ତା ତାହାର ଭୂୟସୀ ପ୍ରଶଂସା କଲେ । ବହିରେ ସହଲେଖକ ରୂପେ କ୍ରିଷ୍ଣାନ୍‌ଙ୍କ ନାମ ଯୋଖିବାକୁ ସେ ଇଚ୍ଛା କଲେ । ବିନୟୀ କ୍ରିଷ୍ଣାନ୍ ଏଥିପାଇଁ ରାଜିହେଲେ ନାହିଁ । ଏ ଯୁଗରେ ଏଭଳି ସୁଯୋଗ ହାତଛଡ଼ା କରିବାକୁ କେତେଜଣ ପ୍ରସ୍ତୁତ ?

୧୯୨୯ ରୁ ୧୯୩୩ ପର୍ଯ୍ୟନ୍ତ ସେ ଢାକା ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ରିଡ଼ର ହୋଇଗଲେ । ସେଠି ଥାନ୍ତି ବୈଜ୍ଞାନିକ ସତ୍ୟେନ୍ଦ୍ର ନାଥ ବୋଷ । ତାଙ୍କ ସାହଚର୍ଯ୍ୟର ସୁଯୋଗ ନେଇ ସେ ସ୍ଫଟିକ-ଚୁମ୍ବକତ୍ୱ ଉପରେ ଚମତ୍କାର ତଥ୍ୟମାନ ପ୍ରକାଶ କଲେ । ସୂକ୍ଷ୍ମ ପରୀକ୍ଷା ଦ୍ୱାରା ସ୍ଫଟିକର ବିଭିନ୍ନ ଦିଗରେ ଚୁମ୍ବକପ୍ରବଣତା ମାପି ସେଥିରୁ ଅଣୁ କିପରି ସଜା ହୋଇଛି ତାହା ଜାଣିବାର ଉପାୟ ବତାଇଲେ । ଏହାଦ୍ୱାରା ଆଧୁନିକ ସ୍ଫଟିକ-ଚୁମ୍ବକତ୍ୱ ଓ ଚୁମ୍ବକୀୟ ରସାୟନ ଶାସ୍ତ୍ରର ଭିତ୍ତି ପ୍ରତିଷ୍ଠା କରାଗଲା । ଗବେଷଣାରେ ତାଙ୍କ ଖ୍ୟାତି ଏପରି ପ୍ରସାର ଲାଭ କରୁଥିଲା ଯେ ସେ ଗୋଟିଏ ସ୍ଥାନରେ ବେଶୀ ଦିନ ରହିପାରୁନଥିଲେ । ଅନ୍ୟମାନେ ତାଙ୍କୁ ଅଧିକ ସୁଯୋଗ ଦେଇ ନେଇଯିବାକୁ ବ୍ୟାକୁଳ ହେଉଥିଲେ । ୧୯୩୩ରେ ସେ ପୁଣି କଲିକତାକୁ ଫେରି ଆସିଲେ । ଏଥରକ ସେ ମହେନ୍ଦ୍ର ଲାଲ ସରକାର-ଗବେଷଣା ପ୍ରଫେସର ହୋଇ ଆସିଲେ । ରେୟାର୍ ଯାର୍ଥ ମୌଳିକର ଲବଣଗୁଡ଼ିକରେ ଚୁମ୍ବକତ୍ୱ କିପରି ଜନ୍ମେ ସେ ସମ୍ବନ୍ଧରେ ଗୁଡ଼ିଏ ଗବେଷଣା ପତ୍ର ପ୍ରକାଶ କଲେ । ଗ୍ରାଫାଇଟ୍ ଭିତରେ ଥିବା ଇଲେକଟ୍ରନ୍ ଗ୍ୟାସ ଭିତରେ ତାପ ଯୋଗାଇଲେ କିପରି ଶକ୍ତି ବିତରିତ ହୋଇଥାଏ ସେ ସମ୍ବନ୍ଧରେ କେତେକ ଉଲ୍ଲେଖନୀୟ ମୌଳିକ ତଥ୍ୟ ସେ ଆବିଷ୍କାର କଲେ । ସେଠି ପାଞ୍ଚବର୍ଷ ନରହୁଣୁ ଏଲାହାବାଦ ବିଶ୍ୱବିଦ୍ୟାଳୟ ତାଙ୍କୁ ପଦାର୍ଥ ବିଜ୍ଞାନର ମୁଖ୍ୟ ଅଧ୍ୟାପକ ହେବାପାଇଁ ଅନୁରୋଧ କଲା । ୧୯୪୨ ରୁ ୧୯୪୭ ପର୍ଯ୍ୟନ୍ତ କ୍ରିଷ୍ଣାନ୍ ସେଠାରେ ରହି ଆଲୋକ, ରଞ୍ଜନ ରଶ୍ମି ଓ ଇଲେକ୍‌ଟ୍ରନର ବିଚ୍ଛୁରଣ, କ୍ୱାଣ୍ଟମତତ୍ତ୍ୱ, ତରଙ୍ଗ ଗତି ବିଜ୍ଞାନ ଏବଂ ପରିସଂଖ୍ୟାନୀୟ ତାପଗତି ବିଜ୍ଞାନ ସମ୍ବନ୍ଧରେ ନାନା ଉପାଦେୟ ତଥ୍ୟ ପ୍ରକାଶ କଲେ ।

ଦେଶ ସ୍ୱାଧୀନ ହେଲା । ବିଜ୍ଞାନର ଉନ୍ନତି ପାଇଁ ଦେଶର ବିଭିନ୍ନ ସ୍ଥାନରେ ଜାତୀୟ ଗବେଷଣାଗାରମାନ ମୁଣ୍ଡ ଟେକିଲା । ରାଜଧାନୀ ଦିଲ୍ଲୀରେ ଗଢ଼ି ଉଠିଲା ନ୍ୟାସନାଲ ଫିଜିକାଲ ଲାବୋରେଟରି । ପଣ୍ଡିତ ନେହରୁଙ୍କ ପ୍ରିୟ ପରିପୂର୍ଣ୍ଣ ବ୍ୟକ୍ତି ସେଠାକୁ ନିର୍ଦ୍ଦେଶକ ହେବାପାଇଁ ନିମନ୍ତ୍ରିତ ହୋଇ ଆସିଲେ ।

ଗବେଷଣାରେ ବ୍ୟସ୍ତ ରହି ମଧ୍ୟ ସେ ଯେତେ ସାହିତ୍ୟ ବହି ପଢ଼ିଥିଲେ ତାହା ଶୁଣିଲେ ଯେ କେହି ବିସ୍ମିତ ହେବ । ତାମିଲ ଓ ସଂସ୍କୃତ ବ୍ୟତୀତ ଇଂରାଜୀ ଭାଷାରେ ସେ ୱାଲଟର ସ୍କଟ୍, ଡିକେନ୍‌ସ, ଠାକ୍ ରି, ଷ୍ଟିଭେନ୍‌ସନ୍, ଡୁମାସ, ଭିକ୍ଟର ହ୍ୟୁଗୋ, କୋନାନ୍ ଡୟଲ୍, ସେକ୍‌ସପିୟର, ମିଲଟନ, ସେଲି, ସ୍ୱିଫଟ, ଆଡ଼ିସନ, ବୋସୱେଲ, ନିଉମ୍ୟାନ, ମାଥ୍ୟୁ ଆର୍ଣ୍ଣୋଲଡ଼, ୱାଲଟର ପେଟର, ଚାର୍ଲସ ଲ୍ୟାମ୍ବ, ଟଲଷ୍ଟୟ, ଇବସେନ, ବର୍ଣ୍ଣାଡ଼ ଶ, ହ୍ୱାଇଟହେଡ଼ ପ୍ରଭୃତିଙ୍କ ଲେଖା ପଢ଼ିଛନ୍ତି । ଏତେଆଡ଼େ ମନଦେଇ ସେ ଏତେ ଉନ୍ନତ ଧରଣର ଗବେଷଣା କିପରି କରିପାରିଲେ ବୋଲି କେହି ସହଜରେ ଭାବିପାରୁନଥିବେ । ସବୁ କଥା କ'ଣ ସର୍ବସାଧାରଣ କରିପାରନ୍ତି ? ଯେଉଁ କେତେଜଣ କରିପାରନ୍ତି ତାଙ୍କୁ ଆମେ କହିଥାଉ ଅସାଧାରଣ ବା ଯୋଗଜନ୍ମା । ଭୋରୁ ଉଠି, ରାସ୍ତାରେ ବୁଲାଚଲା କରି, ଥଣ୍ଡା ପାଣିରେ ଗାଧୋଇ ସକାଳ ଛଅଟା ବେଳକୁ ପ୍ରସ୍ତୁତ ହୋଇ ଯାଉଥିଲେ । କୁଆଡ଼େ ଯିବାକୁ ଥିଲେ ଦିନେ ଓଳିଏ ଆମେ ଏପରି କରୁ । ପ୍ରତିଦିନ ଘଣ୍ଟା କଣ୍ଟା ସଙ୍ଗରେ ତାଳଦେଇ ସେ ଏହିଭଳି ପ୍ରସ୍ତୁତ ହେଉଥିଲେ । ପୃଥିବୀର ବିଖ୍ୟାତ ପତ୍ରିକାମାନଙ୍କରେ ପ୍ରାୟ ୧୫୦ଟି ଗବେଷଣା ପତ୍ର ଛପାଇଥିଲେ । ଏବେତ ଅନେକ ଗବେଷକ ଯୁବାବସ୍ଥାରେ ଏହି ସଂଖ୍ୟା ଟପିବାକୁ ବସିଲେଣି । ସଂଖ୍ୟା ପଛରେ ସେମାନେ ଧାଇଁଛନ୍ତି । ସରକାରୀ ଯୋଜନା, କମିଶନଙ୍କ ଅନୁଦାନ ଓ ବିଦେଶୀ ଋଣ ସେମାନଙ୍କ ଗତିକୁ ତ୍ୱରାନ୍ୱିତ ମଧ କରି ଲାଗିଛି । ଆଶଙ୍କା ହୁଏ; ଏମାନେ ଦୌଡ଼ରେ ଥକି ପଡ଼ିବେ । କାରଣ କ୍ରିଷ୍ଣାନ୍ ସୁନାମକୁ ପଛରେ ରଖି ସତର୍କତାର ସହିତ ଚାଲୁଥିଲେ, ଏମାନେ କିନ୍ତୁ ଅଣନିଃଶ୍ୱାସୀ ହୋଇ ସୁନାମ ପଛରେ ଧାଉଁଛନ୍ତି ।

ଜୀବନରେ କ୍ରିଷ୍ଣାନ୍ ବହୁବାର ସମ୍ମାନିତ ହୋଇଥିଲେ । ୧୯୪୦ ରେ ଏଫ.ଆର.ଏସ. ଉପାଧି ପାଇଲେ । ସେହି ବର୍ଷ ଭାରତୀୟ ବିଜ୍ଞାନ କଂଗ୍ରେସର ପଦାର୍ଥ ବିଜ୍ଞାନ ବିଭାଗର ସଭାପତି ହେଲେ । ୧୯୪୬ ରେ ସାର ଉପାଧି ପାଇଲେ । ୧୯୪୯ ରେ ଭାରତୀୟ ବିଜ୍ଞାନ କଂଗ୍ରେସର ସାଧାରଣ ଅଧିବେଶନରେ ସଭାପତିତ୍ୱ କଲେ । ୧୯୫୪ରେ ପଦ୍ମଭୂଷଣ ହେଲେ । ୧୯୬୧ ରେ ତାଙ୍କୁ ପ୍ରଥମେ ଭାଟନଗର ପୁରସ୍କାର

ପ୍ରଦାନ କରାଗଲା । ୧୯୩୭ ରେ ଲର୍ଡ଼ ରଦରଫୋର୍ଡ଼ କେମ୍ବ୍ରିଜର କ୍ୟାଭେଣ୍ଡିସ୍ ଗବେଷଣାଗାରକୁ ଓ ସାର ଉଇଲିୟମ ବ୍ରାଗ ଲଣ୍ଡନର ରୟାଲ ଇନଷ୍ଟିଚ୍ୟୁସନ୍‌କୁ ବକ୍ତୃତା ଦେବାପାଇଁ କ୍ରିଷ୍ଣାନଙ୍କୁ ନିମନ୍ତ୍ରଣ କଲେ । ତାଙ୍କ ଗବେଷଣାର ଉତ୍କର୍ଷ ସ୍ୱୀକାର କରି ଲିଜ ବିଶ୍ୱବିଦ୍ୟାଳୟ ତାଙ୍କୁ ପଦକ ପ୍ରଦାନ କଲା । ୧୯୫୫ ରେ ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟାସନାଲ ଏକାଡ଼େମି ଅଫ୍ ସାଇନ୍ସରେ ବକ୍ତୃତା ଦେବାକୁ ତାଙ୍କୁ ସୁଯୋଗ ମିଳିଥିଲା । ଏଭଳି ସୁଯୋଗ ଆଗରୁ କେବଳ ଲଣ୍ଡନର ରୟାଲ ସୋସାଇଟି, ରୟାଲ ନେଦରଲାଣ୍ଡସ ଏକାଡ଼େମି ଏବଂ ସ୍ୱେଡ଼ିସ ଏକାଡ଼େମିର ସଭାପତିମାନଙ୍କ ଭଳି ବ୍ୟକ୍ତିଙ୍କୁ ମିଳିଥିଲା ।

ଯୁଗ ଯୁଗ ପାଇଁ ତାଙ୍କ ବୈଜ୍ଞାନିକ ଗବେଷଣା ପତ୍ରମାନ ପ୍ରେରଣାର ଉତ୍ସହୋଇ ରହିଥିବ । ସେ ରାମନ୍‌ଙ୍କ ସହତ ମିଶି ବିଭିନ୍ନ ପ୍ରକାର ତରଳରେ କିପରି ଆଲୋକ ବିଚ୍ଛୁରଣ ହୁଏ ତାହା ପରୀକ୍ଷା କରିଥିଲେ । ସେହି ଫଳାଫଳଗୁଡ଼ିକ ରାମନ ସିଦ୍ଧାନ୍ତର ପଥ ସୁଗମ କଲା ଓ ତାହାର ଭିତ୍ତି ସୁଦୃଢ଼ କଲା । ଅଣୁର ସାଜସଜ୍ଜା ଅନୁସାରେ ବିଭିନ୍ନ ସ୍ଫଟିକ ଓ କେତେକ ଧାତବ ଲବଣ ମଧ୍ୟରେ କିପରି ଚୁମ୍ବକତ୍ୱ ସୃଷ୍ଟି ହୋଇ ବିଭିନ୍ନ ଦିଗରେ ଚୁମ୍ବକପ୍ରବଣତା ଭିନ୍ନ ହୁଏ ତାହା ସେ ପ୍ରାଞ୍ଜଳଭାବେ ବିଶ୍ଳେଷଣ କରିଥିଲେ । ଗ୍ରାଫାଇଟ୍ ପ୍ରଭୃତି କେତେକ ପଦାର୍ଥକୁ ଉତ୍ତପ୍ତ କଲେ ସେଥିରେ ଉଷ୍ଣତା କିପରି ସଂଚାରିତ ହୁଏ ତାହା ସେ ଲକ୍ଷ୍ୟ କଲେ । ସେଇ ତାପମାତ୍ରାର ସଂଚାର ଅନୁଧ୍ୟାନ କରି ସେଥିରୁ ଇଲେକଟ୍ରନ୍‌ଗୁଡ଼ିକ କିପରି ଫର୍ମିଡ଼ିରାକ୍ ପରିସଂଖ୍ୟାନ ଅନୁସାରେ ଶକ୍ତି ଗ୍ରହଣ କରନ୍ତି ତାହାର ଉପଯୁକ୍ତ ସିଦ୍ଧାନ୍ତ ବାଢ଼ିଥିଲେ । ଏ.ବି. ଭାଟିଆଙ୍କ ସହଯୋଗରେ ଧାତୁ ଓ ମିଶ୍ର ଧାତୁରେ ବୈଦ୍ୟୁତିକ ଗୁଣ ଉପାଦାନର ସାନ୍ଦ୍ରତା ଅନୁସାରେ କିପରି ପରିବର୍ତ୍ତିତ ହୁଏ ତାହା ଅନୁଧ୍ୟାନ କରିଥିଲେ ।

ତାଙ୍କ ସହଯୋଗୀ ଗବେଷକ ଆର୍. ସୁନ୍ଦରାମ କହନ୍ତି — ଭ୍ରମଣ କଲାବେଳେ ସେ ଗବେଷଣା ଚିନ୍ତାରେ ମଜ୍ଜି ରହୁଥିଲେ । ଥରେ ବାଙ୍ଗାଲୋର ଯିବାପାଇଁ ବିମାନଘାଟିକୁ ଯାଉଥାନ୍ତି । ମଟର ଗାଡ଼ିରେ ଗଲାବେଳେ ସୁନ୍ଦରାମ୍‌ଙ୍କ ସହିତ ଗଣିତ ଶାସ୍ତ୍ରର ଜଟିଳ ଗାମା ଓ ବିଟା ଫଳନ ସମ୍ପର୍କରେ କେତେକ ଆଲୋଚନା କଲେ । ଉଡ଼ାଜାହାଜ ଛାଡ଼ିବାବେଳ ହେଲାରୁ ସେ ତାଙ୍କୁ କହିଗଲେ ଯେ ସେ ବାଟରେ ଏ ବିଷୟ ଚିନ୍ତା କରି ଦେଖିବେ । ଠିକ୍ ବର୍ଷକ ପରେ ବମ୍ବେ ଯିବା ପୂର୍ବରୁ ଗବେଷଣାଗାରରେ ଧାତୁଗୁଡ଼ିକର "ଫର୍ମିପୃଷ୍ଠ" ସମ୍ପର୍କରେ କେତେକ ଆଲୋଚନା କଲେ । କହିଗଲେ ପରେ ଫେରିଲେ ଅଧିକ ଆଲୋଚନା କରିବେ । ଆଉ ସେ ଫେରିଲେ ନାହିଁ । ତୃତୀୟ ଥରପାଇଁ ତାଙ୍କର ହୃଦାଘାତ ହେଲା ।

ସେ ଚିରଦିନ ପାଇଁ ଆଖି ବୁଜିଲେ । ଏକ ବିରାଟ ପରିପୂର୍ଣ୍ଣ ବ୍ୟକ୍ତିଙ୍କର କର୍ମମୟ ଜୀବନର ଅବସାନ ହେଲା । ଏହି ଦାରୁଣ ଦୁଃସମ୍ବାଦ ଖବର କାଗଜରୁ ପଢ଼ି ମୁଁ କାନାଡ଼ାରେ ଥିବା ତାଙ୍କ ପ୍ରିୟ ଛାତ୍ର ଏ.ବି. ଭାଟିଆଙ୍କୁ ଜଣାଇଲି । ଶୁଣିଲାମାତ୍ରେ ତାଙ୍କ ଆଖି ଲୁହରେ ଛଳଛଳ ହୋଇଗଲା । ଅଧ୍ୟାପକ ଭାଟିଆ ଭାରତ ତ୍ୟାଗ କରି କାନାଡ଼ାର ନାଗରିକତ୍ୱ ଗ୍ରହଣ କରିଛନ୍ତି । ଜଣେ ଶ୍ୱେତାଙ୍ଗିନୀଙ୍କ ସହ ସେଠି ସେ ଘର ସଂସାର କରିଛନ୍ତି । ଆଲବର୍ଟା ବିଶ୍ୱବିଦ୍ୟାଳୟର ତାତ୍ତ୍ୱିକ ପଦାର୍ଥ ବିଜ୍ଞାନାଗାରର ନିର୍ଦ୍ଦେଶକ । ଭାରତ ପ୍ରତି ତାଙ୍କର କୌଣସି ମୋହ ମମତା ନାହିଁ । ତଥାପି ତାଙ୍କ ଗୁରୁ ସାର୍ କେ. ଏସ୍‌ଙ୍କ ମୃତ୍ୟୁ ଖବର ପାଇ ସେ ଲୋତକ ସମ୍ବରଣ କରି ପାରିଲେ ନାହିଁ । ତାଙ୍କର ଅନ୍ୟତମ ଛାତ୍ର ସୁନ୍ଦରାମ କହନ୍ତି ଛାତ୍ରଙ୍କୁ ଆକର୍ଷଣ କଲାପରି ଯାବତୀୟ ମାନବିକ ଗୁଣ କ୍ରିଷ୍ଣାନ୍‌ଙ୍କଠାରେ ପୂରି ରହିଥିଲା । ସେ ଥିଲେ ବିନୟୀ, ସରଳ, ନିଷ୍କପଟ, ସ୍ନେହୀ ଓ କର୍ତ୍ତବ୍ୟ ପରାୟଣ । ଏକାଧାରରେ ପଣ୍ଡିତ ଓ ନମ୍ର । ଯଥାର୍ଥରେ ଜଣେ ଭାରତୀୟ ଗୁରୁ ।



# ଭି.ଏନ୍. ଶିରୋଦକର

**ପ୍ରଫେସର ଡାକ୍ତର ବାସନ୍ତୀ ବହିଦାର**

ପ୍ରସୂତି ଓ ସ୍ତ୍ରୀରୋଗ ଚିକିତ୍ସା କ୍ଷେତ୍ରରେ 'ଶିରୋଦକର' ଏକ ଅବିସ୍ମରଣୀୟ ନାମ । ସେ ଭାରତର ଗୋଆସ୍ଥ ଶିରୋଦା ଠାରେ ୧୮୯୯ ମସିହା ଏପ୍ରିଲମାସ ୨୭ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପୂରାନାମ ଥିଲା ଭିଥାଲରାଓ ନଗେଶ ଶିରୋଦକର । କିନ୍ତୁ ସେ, ଡଃ ଭି.ଏସ୍. ଶିରୋଦକର ନାମରେ ଅଧିକ ପରିଚିତ ।

ବିଦ୍ୟାଳୟ ଶିକ୍ଷା ଠାରୁ ବୈଷୟିକ ଶିକ୍ଷାପ୍ରତି ଆଗ୍ରହ ତାଙ୍କର ଥିଲା । ଏଣୁ ଆବଶ୍ୟକ ଶିକ୍ଷାଗତ ଭିତ୍ତି ପରେ ଜଣେ ଡାକ୍ତର ହେବାର ଲକ୍ଷ୍ୟ ନେଇ ସେ ମୁମ୍ବାଇସ୍ଥ ଗ୍ରାଣ୍ଟ ମେଡ଼ିକାଲ କଲେଜରେ ଅଧ୍ୟୟନ କରି ୧୯୨୩ ଖ୍ରୀଷ୍ଟାବ୍ଦରେ ଭେଷଜ ବିଜ୍ଞାନରେ ସ୍ନାତକ ଉପାଧି ହାସଲ କରିଥିଲେ । ପରେ ପୁଣି ସେହି ଭେଷଜ ମହାବିଦ୍ୟାଳୟରୁ ୧୯୨୭ ମସିହାରେ ସ୍ତ୍ରୀ ଓ ପ୍ରସୂତି ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ପ୍ରାପ୍ତ ହୋଇଥିଲେ । ପରେ ପରେ ସେ ବିଲାତ ଯାଇ ଲଣ୍ଡନସ୍ଥ ରୟାଲ କଲେଜ ଅଫ୍ ସର୍ଜନସ୍‌ରୁ ୧୯୩୧ ମସିହାରେ ଏଫ୍.ଆର୍.ସି.ଏସ୍. ଫେଲୋସିପ୍ ଲାଭ କରିଥିଲେ । ସେତେବେଳେ ବିଲାତରେ ଫେଲୋସିପ୍ ପାଇବା ଅତ୍ୟନ୍ତ କଷ୍ଟକର ବ୍ୟାପାର ଥିଲା । ଶିକ୍ଷାନବିଶ ହିସାବରେ ସେ ସଦା ନିରଳସ ଓ କର୍ମଠ ବ୍ୟକ୍ତିତ୍ୱ ଥିଲେ । କଠିନ ପରିଶ୍ରମ ଓ ଅଧ୍ୟବସାୟ ଦ୍ୱାରା ସେ ନିର୍ଦ୍ଦିଷ୍ଟ ସମୟ ଅବଧି ଭିତରେ ଅଧ୍ୟୟନ ସମାପ୍ତ କରିଥିଲେ ଓ ସେହିଠାରେ ପ୍ରାଧ୍ୟାପକ ଭିକ୍ଟରଲାକ୍ (Prof. Victorlack) ଓ ଜେ.ଡ଼ି. ମୁର୍ଦ୍ଧାକ (J.D. Murdak)ଙ୍କ ଭଳି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଅସ୍ତ୍ରୋପଚାର ବିଶେଷଜ୍ଞମାନଙ୍କ ସହ କାମ କରିବାର ସୁଯୋଗ ପାଇଥିଲେ ।

୧୯୩୫ ମସିହାରେ ସେ ବିଲାତରୁ ଫେରି ଆସିଲା ପରେ ଜାମସେଦ୍‌ଜୀ ଟାଟା କଲେଜ ଓ ଚିକିତ୍ସାଳୟ (J.J. Group of College & Hospital)ରେ ଜଣେ ସ୍ତ୍ରୀ ଓ

ପ୍ରସୂତି ରୋଗ ବିଶେଷଜ୍ଞ ଭାବେ ଯୋଗ ଦେଇଥିଲେ । ସେହିଠାରେ ହିଁ ସେ ତାଙ୍କର ଉଲ୍ଲେଖନୀୟ ବୃତ୍ତିର ଉତ୍କର୍ଷ ପ୍ରତିପାଦନ କରିବାକୁ ପ୍ରକୃଷ୍ଟ କ୍ଷେତ୍ର ଓ ସୁଯୋଗ ପାଇଲେ । ଜଣେ ପ୍ରବୀଣ ଉଦୀୟମାନ ଚିକିତ୍ସକ ରୂପେ ଓ ଛାତ୍ରବତ୍ସଳ ପ୍ରତିଭାବାନ୍ ଶିକ୍ଷକ ରୂପେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ତାଙ୍କର ଉଚ୍ଚକୋଟୀର ଅଧ୍ୟାପନା ଶୈଳୀ ଅଧ୍ୟାପନା କ୍ଷେତ୍ରରେ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିପାରିଥିଲା ।

ରୋଗୀ ଚିକିତ୍ସା କ୍ଷେତ୍ରରେ ମଧ୍ୟ ଜଣେ ପ୍ରବୀଣ ଓ କୁଶଳୀ ଚିକିତ୍ସକ ଓ ଅସ୍ତ୍ରୋପଚାର ବିଶେଷଜ୍ଞ ଭାବେ ତାଙ୍କର ପ୍ରତିଷ୍ଠା କ୍ରମେ ସମଗ୍ର ଦେଶରେ ପ୍ରସାରିତ ହେଲା । ତାଙ୍କର ଅମାୟିକ ବ୍ୟବହାର ଓ କର୍ମକୁଶଳତାରେ ଆକୃଷ୍ଟ ହେଇ ଦୂରଦୂରାନ୍ତରୁ ବହୁ ଦୁରାଗ୍ରସ୍ତ ରୋଗୀ ତାଙ୍କର ପରାମର୍ଶ ପାଇଁ ଆସିବାକୁ ଲାଗିଲେ । ଜେ. ଜେ. ଟାଟା ଶ୍ରେଣୀୟ ଚିକିତ୍ସାଳୟ ତାଙ୍କ ନାମ ପାଇଁ ପ୍ରସିଦ୍ଧି ଲାଭ କଲା ।

ଅତି ଅଳ୍ପ ସମୟ ଭିତରେ ସେ ଜଣେ ଅମାୟିକ, ନମ୍ର, ଦରଦୀ ଚିକିତ୍ସକ ଭାବେ ସୁଖ୍ୟାତି ଅର୍ଜନ କରିପାରିଲେ । ଅର୍ଥ ଉପାର୍ଜନ ତାଙ୍କ ଜୀବନରେ କେବେ ବି ଉଦ୍ଦେଶ୍ୟ ନଥିଲା । ଚିକିତ୍ସା ଓ ଗବେଷଣାକୁ ସେ ଜୀବନରେ ବ୍ରତ ଭଳି ଗ୍ରହଣ କରିଥିଲେ । ଅତି ଭଦ୍ର, ନମ୍ର, ମିଷ୍ଟଭାଷୀ, ପରଦୁଃଖ ଯନ୍ତ୍ରଣାରେ ମ୍ରିୟମାଣ ହୋଇପଡୁଥିବା ଦରଦୀ ଡଃ ଶିରୋଦକର ରୋଗୀମାନଙ୍କ ନିକଟରେ ଜଣେ ଦେବଦୂତ ଭଳି ଥିଲେ । କୁହାଯାଏ ତାଙ୍କର ହସ ହସ ନମନୀୟ କଥା ଓ କୋମଳ ସ୍ପର୍ଶ ରୋଗୀମାନଙ୍କ ଯନ୍ତ୍ରଣା ବହୁମାତ୍ରାରେ ଲାଘବ କରୁଥିଲା ।

ଚିକିତ୍ସା ସମୟ ଅତିକ୍ରାନ୍ତ ହେଲେ ଅଧିକାଂଶ ସମୟ ସେ ବିଜ୍ଞାନାଗାରରେ ରୋଗ ଓ ଅସ୍ତ୍ରୋପଚାର ସମ୍ବନ୍ଧରେ ଅନୁସନ୍ଧାନରେ ସତତ ବ୍ରତୀ ରହୁଥିଲେ । ଏହି ପୃଷ୍ଠଭୂମିରେ ସେ ବହୁ ପ୍ରକାର ଅଭିନବ ଅସ୍ତ୍ରୋପଚାର ପ୍ରଣାଳୀ ଉଦ୍ଭାବନ କରିବାକୁ କ୍ଷମ ହୋଇଥିଲେ ।

ତାଙ୍କର କାର୍ଯ୍ୟକାଳର ଆଦ୍ୟ ସମୟରେ ଚିକିତ୍ସା ବିଜ୍ଞାନ, ଆଜିପରି ଉତ୍କର୍ଷ ଲାଭ କରି ନଥିଲା । ଗର୍ଭବତୀ ମହିଳାମାନେ ପୁଷ୍ଟିକର ଖାଦ୍ୟ ଅଭାବର ଶିକାର ହେଉଥିଲେ । ଏଣୁ ଗର୍ଭାବସ୍ଥା ଜଟିଳ ହୋଇ ପଡୁଥିଲା । ଗର୍ଭସ୍ଥ ଭ୍ରୂଣ ଅକାଳରେ ନଷ୍ଟ ହୋଇ ଯାଉଥିଲେ । ରକ୍ତସ୍ରାବ, ଅକାଳରେ ଗର୍ଭପାତ ଓ ଶିଶୁ ମୃତ୍ୟୁହାର ଦ୍ରୁତ ଗତିରେ ଭୀତିପ୍ରଦ ଅବସ୍ଥାକୁ ବଢ଼ି ଚାଲିଥିଲା । ଏ ସମସ୍ତ ଦେଖି ଡଃ ଶିରୋଦକର ବହୁଳ ଭାବେ ମର୍ମାହତ ହେଉଥିଲେ ଓ ତା'ର ପ୍ରତିକାର ବ୍ୟବସ୍ଥା ପାଇଁ ସର୍ବଦା ଚେଷ୍ଟିତ ଥିଲେ । ପୁଷ୍ଟିକର ଖାଦ୍ୟର ଅଭାବ ଓ

ରକ୍ତହୀନତା ତ ମହିଳାମାନଙ୍କର ଚିରସହଚର ଥିଲା । ତାହା ସହ ନିଜର ଅନୁଭୂତିଲବ୍ଧ ଜ୍ଞାନରୁ ଜାଣି ପାରିଥିଲେ ଯେ ଜରାୟୁର ଅନ୍ତର୍ମୁଖର ଜନ୍ମଗତ ଦୁର୍ବଳତା ଯୋଗୁଁ ଗର୍ଭାଧାନ ସମୟ ଗଡ଼ୁଥିବା ସମୟରେ ଜନ୍ମଦ୍ୱାରର ସ୍ଥିରତା ବଜାୟ ରହିବା ସମ୍ଭବ ହେଉନାହିଁ । ଫଳରେ ଭ୍ରୂଣର ବହିର୍ଗମନ ଅନେକ କ୍ଷେତ୍ରରେ ସଂଘଟିତ ହୋଇ ଗର୍ଭପାତ ହୋଇଯାଉଛି । ଏହି ଉପଲବ୍ଧି ପୃଷ୍ଠଭୂମିରେ ଡଃ ଶିରୋଦକର ଏକ ଅଭିନବ ଅସ୍ତ୍ରୋପଚାର ଉଦ୍ଭାବନ ପାଇଁ ଚିନ୍ତା କଲେ । ଅବଶେଷରେ ସେ ଏକ ଅସ୍ତ୍ରୋପ୍ରଚାର ପ୍ରଣାଳୀ କାର୍ଯ୍ୟକାରୀ କରି ସେଇ ଅଭାବକୁ ପ୍ରତିରୋଧ କଲାଭଳି ଏକ ଅଭିନବ ପ୍ରଣାଳୀ ଅନୁସରଣ କଲେ । ସେଥିରେ ଜରାୟୁର ଗ୍ରୀବାରେ (cervix) ସାମାନ୍ୟତମ ଟିସୁ କ୍ଷୟ ନକରି ଏକ ବର୍ତ୍ତୁଳାକାରରେ ସୀବନ ବା ସୁଚର ଦେଇ ଅକ୍ଷମ ସର୍ଭିକ୍ସରେ ସ୍ଥିରତା ବଜାୟ ରଖିବାକୁ ସମର୍ଥ ହେଲେ । ଏହାକୁ ସେ ସର୍ଭାଇକାଲ ସାର୍କଲେଜ୍ (cervical circlase) ନାମରେ ନାମିତ କଲେ । ପରବର୍ତ୍ତୀ ଅବସ୍ଥାରେ ତାଙ୍କ ନାମାନୁସାରେ ଏହାକୁ "ଶିରୋଦକର୍ ଅସ୍ତ୍ରୋପଚାର" ନାମରେ ନାମିତ କରାଯାଇଛି । ଏହି ଅସ୍ତ୍ରୋପଚାର ସମ୍ବନ୍ଧରେ ସେ ବିସ୍ତୃତ ବିବରଣୀ ପ୍ରକାଶ କଲେ । ଏଭଳି ପ୍ରକ୍ରିୟା ବା ଅସ୍ତ୍ରୋପଚାରଗତ କାର୍ଯ୍ୟ ପ୍ରଣାଳୀ କ୍ରମେ ଦେଶ ବିଦେଶରେ ବହୁ ସ୍ତ୍ରୀ ଓ ପ୍ରସୂତି ରୋଗ ବିଶେଷଜ୍ଞ ଅନୁସରଣ କରି ଖୁବ୍ ସୁଫଳ ଲାଭ କଲେ । ତଦାନୀନ୍ତନ ଅସ୍ତ୍ରୋପଚାର ପ୍ରେକ୍ଷାପଟରେ ଏ ପ୍ରଣାଳୀ ସମୟୋପଯୋଗୀ ହୋଇପାରିଥିଲା ଓ ସବୁ ଦେଶରେ ଆଦୃତ ହୋଇପାରିଥିଲା । ଏହି ସଫଳତା ପାଇଁ ଡଃ ଶିରୋଦକର ଦେଶବିଦେଶରୁ ବହୁ ନିମନ୍ତ୍ରଣ ପାଇବାକୁ ଲାଗିଲେ । ଏଥିରୁ ସ୍ପଷ୍ଟ ଜଣାପଡ଼ିଥିଲା ଯେ ଡଃ ଶିରୋଦକର୍ ଅଙ୍ଗର ଟିସୁ ସଂରକ୍ଷଣକୁ ଯଥେଷ୍ଟ ଗୁରୁତ୍ୱ ଦେଉଥିଲେ । ସେ କହୁଥିଲେ, ଟିସୁ ଯେତେ ସାମାନ୍ୟ ହେଲେ ମଧ୍ୟ ଶରୀରରେ ଉପକାରକୁ ଆସିପାରେ । ଏଣୁ କାଟିଦେବା ବା ବିଦ୍ୟୁତ୍ କଟେରୀ (electric cautery) ଦ୍ୱାରା ପୋଡ଼ି ନଷ୍ଟ କରିଦେବା ସପକ୍ଷରେ ସେ ଆଦୌ ନଥିଲେ । ଅସ୍ତ୍ରୋପଚାର କ୍ଷେତ୍ରରେ ସେ ଯେଉଁ ନଜିର ସୃଷ୍ଟି କଲେ, ତାକୁ ବିଶଦଭାବେ ବୁଝେଇବା ଓ ଦର୍ଶାଇବା ପାଇଁ ସେ ଦେଶ ବିଦେଶକୁ ବହୁବାର ନିମନ୍ତ୍ରିତ ହେଉଥିଲେ ।

ଜାପାନ ସରକାରଙ୍କଠାରୁ ନିମନ୍ତ୍ରଣ ପାଇ ସେଠାରେ ସେ ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଉଦ୍‌ବୋଧନ ଦେଇଥିଲେ । ସେହିଭଳି ଜେନେଭାଠାରେ ଅନୁଷ୍ଠିତ ହୋଇଥିବା ଅନ୍ତର୍ଜାତୀୟ ସ୍ତ୍ରୀ ପ୍ରସୂତି ବିଶେଷଜ୍ଞଙ୍କ ସମ୍ମିଳନୀରେ ସେ ବିଶେଷ ଭାବେ ନିମନ୍ତ୍ରିତ ହୋଇ ଉକ୍ତ ଅସ୍ତ୍ରୋପଚାର ସମ୍ବନ୍ଧୀୟ ବିଶଦ ଓ ସାରଗର୍ଭକ ଭାଷଣ ଦେଇଥିଲେ । ନିଉଜିଲ୍ୟାଣ୍ଡର

ରୟାଲ ଭିକ୍ଟୋରିଆ ଚିକିତ୍ସା କେନ୍ଦ୍ରରୁ ସ୍ୱତନ୍ତ୍ର ନିମନ୍ତ୍ରଣ ପାଇ ଅଷ୍ଟ୍ରେଲିଆର ସ୍ତ୍ରୀ ଓ ପ୍ରସୂତି ବିଶେଷଜ୍ଞଙ୍କର ଉପକାର ପାଇଁ ଡଃ ଶିରୋଦକର ତାଙ୍କର ନବୀକରଣ ପ୍ରଣାଳୀ ବିଷୟରେ ବିଶଦ ଆଲୋଚନା କରିଥିଲେ । କେବଳ ସେତିକି ନୁହେଁ, ନିଜେ ଅସ୍ତ୍ରୋପଚାର ମାଧ୍ୟମରେ ପ୍ରଣାଳୀର ପ୍ରତ୍ୟେକ ପାଦ ସେମାନଙ୍କୁ ଦର୍ଶାଇ ଥିଲେ ।

ଏତଦ୍‌ବ୍ୟତୀତ ବିଜ୍ଞାନ କ୍ଷେତ୍ରରେ ତାଙ୍କର ଅନ୍ୟାନ୍ୟ ଅବଦାନ ହେଲା ;

୧) ନିମ୍ନଗାମୀ ଜରାୟୁର ଅସ୍ତ୍ରୋପଚାରଗତ ପ୍ରତିକାର ପ୍ରଣାଳୀରେ ସୁଧାର ଆଣିବା ।

୨) ଜନ୍ମଗତ ରୁଦ୍ଧ (blocked) ଫାଲୋପିଆନ୍ ଟିଉବ୍ ବା ଡିମ୍ବବାହୀ ନଳୀର ପ୍ରତିକାରଗତ ସଂଶୋଧନ (repair of blocked Fallopian tube) ଓ

୩) ଅସ୍ପଷ୍ଟ ବା ଅବିକଶିତ ଜନନ ଦ୍ୱାରର ପୁନର୍ଗଠନ ଆଦି କେତେକ ନବୀକରଣ ପ୍ରଣାଳୀ ସେ ଉଦ୍‌ଭାବନ କରିଥିଲେ । ତାଙ୍କର ଏ ସମସ୍ତ ଗବେଷଣାଗତ କୃତିକୁ ସେ ବୈଜ୍ଞାନିକ ପ୍ରବନ୍ଧ ମାଧ୍ୟମରେ ଦେଶ ବିଦେଶର ବହୁ ବିଜ୍ଞାନ ପତ୍ରପତ୍ରିକାରେ ପ୍ରକାଶିତ କରିଥିଲେ ।

ଭେଷଜ ମହାବିଦ୍ୟାଳୟ ଶ୍ରେଣୀ ଗୃହରେ ଅଧ୍ୟାପନା, ଅସ୍ତ୍ରୋପଚାର ସମୟରେ ସହଯୋଗୀମାନଙ୍କୁ ପରାମର୍ଶ ଦେବା ଓ ବୈଜ୍ଞାନିକ ସମ୍ମିଳନୀରେ ଉଦ୍‌ବୋଧନ ବେଳେ ଇଂରାଜୀ ଭାଷା ବ୍ୟବହାର କରୁଥିଲେ ମଧ୍ୟ ନିଜ ପରିବାରରେ, ଆତ୍ମୀୟମାନଙ୍କ ମଧ୍ୟରେ କଥୋପକଥନରେ ଏପରିକି ନିଜ ରାଜ୍ୟରେ ବିଦ୍ୟାଳୟମାନଙ୍କରେ ଭାଷଣରେ ମଧ୍ୟ ସେ ତାଙ୍କର ମାତୃଭାଷା, 'କୋଙ୍କନୀ'ରେ କହୁଥିଲେ । ମାତୃଭାଷା ପ୍ରତି ତାଙ୍କର ଗଭୀର ଆନ୍ତରିକତା ଥିଲା । ପିଲାଦିନେ ସେ ନିଜ ମାତୃଭାଷାରେ କବିତା ମଧ୍ୟ ଲେଖୁଥିଲେ । ନିଜ ସ୍ଥାନ ଓ ଭାଷା ପ୍ରୀତି, ଅମାୟିକ ଭାବ, ଆଚାରରେ ସ୍ୱଚ୍ଛତା ଓ ସରଳତା, ଭାବ ପ୍ରକାଶରେ ନମ୍ରତା ତାଙ୍କୁ ଆଧନୀନିର୍ଦ୍ଧନଙ୍କ ଠାରେ ଅତ୍ୟନ୍ତ ପ୍ରିୟ ଓ ଆଦୃତ କରିପାରିଥିଲା । ଅନ୍ୟ ଅର୍ଥରେ କହିବାକୁ ଗଲେ ସେ ଅତ୍ୟନ୍ତ ଜନପ୍ରିୟ ମଣିଷଟିଏ ଥିଲେ ।

ସାଧାରଣତଃ ଦେଖାଯାଇଥାଏ ଯେ ଧୀସମ୍ପନ୍ନ, ବିରାଟ ଓ ବିଶାଳ ବ୍ୟକ୍ତିତ୍ୱମାନଙ୍କର ହୃଦୟରେ କିଛି ନା କିଛି କଳା ଓ ସଂସ୍କୃତିର ଝଲକ ଅନ୍ତର୍ନିହିତ ଥାଏ । ଡଃ ଶିରୋଦକର ମଧ୍ୟ ସେଥିରୁ ବ୍ୟତିକ୍ରମ ନଥିଲେ । କର୍ମକ୍ଷେତ୍ରରେ ଦୀର୍ଘ ସମୟ ଧରି ଘର୍ମଦ ପରିଶ୍ରମ ପରେ ଶାରୀରିକ ସହ ମାନସିକ ଚିତ୍ତବିନୋଦନର ଆବଶ୍ୟକତା ସେ ଉପଲବ୍ଧି କରୁଥିଲେ ।

ସେ ନିଜ ଭିତରେ ଜଣେ କଳାକାର ଓ ସଙ୍ଗୀତଜ୍ଞଙ୍କୁ ଆବିଷ୍କାର କରିଥିଲେ । ଅବସର ସମୟରେ ଚିତ୍ରାଙ୍କନ ଓ ସଙ୍ଗୀତ ତାଙ୍କୁ ଯଥେଷ୍ଟ ଆମୋଦିତ କରୁଥିଲା । ସେହି କଳାପ୍ରେମୀ, ମହାନ୍ ଅମ୍ଳାନ ପ୍ରତିଭାଧାରୀ ବୈଜ୍ଞାନିକ ତାଙ୍କର ସମସ୍ତ ବୈଜ୍ଞାନିକ ଉତ୍ତରଦାନକୁ ପଛରେ ପକାଇ ୧୯୭୧ ମସିହା ମାର୍ଚ୍ଚମାସ ୭ ତାରିଖ ଦିନ ଇହଲୀଳା ସମ୍ବରଣ କରିଥିଲେ ।

ଗବେଷଣାଦ୍ୱାରା ଶିକ୍ଷା ଓ ବିଜ୍ଞାନ କ୍ଷେତ୍ରରେ ତାଙ୍କର ଅତୁଳନୀୟ ଅବଦାନକୁ ଦୃଷ୍ଟିରେ ରଖି ତାଙ୍କୁ ବହୁ ସମ୍ମାନରେ ଭୂଷିତ କରାଯାଇଥିଲା ଓ ସେ ଅନେକ ଉଚ୍ଚ ଓ ସମ୍ମାନଜନକ ପଦବୀରେ ଅଧିଷ୍ଠିତ ହୋଇଥିଲେ । ସେଗୁଡ଼ିକ ମଧ୍ୟରୁ ନିମ୍ନରେ କେତେକ ଉଦ୍ଧାର କରାଗଲା ।

୧) ଅନ୍ତର୍ଜାତୀୟ କ୍ଷେତ୍ରରେ ଜଣେ ସମ୍ମାନିତ ସ୍ତ୍ରୀରୋଗ ଓ ପ୍ରସୂତି ବିଶେଷଜ୍ଞ ଭାବେ ସ୍ୱୀକୃତ ।

୨) ଶାନ୍ତିଲାଲ୍ ସାହା ଗର୍ଭପାତ ସମିତିର ଜଣେ ସମ୍ମାନିତ ପ୍ରମୁଖ ସଭ୍ୟ ।

୩) ସ୍ତ୍ରୀ ଓ ପ୍ରସୂତି ବିଜ୍ଞାନରେ ଇଂଲଣ୍ଡର ରୟାଲ କଲେଜର ଜଣେ 'ଫେଲୋ' । ଏଭଳି ସମ୍ମାନ ପାଇବାରେ ସେ ପ୍ରଥମ ଭାରତୀୟ ଥିଲେ ।

୪) ୧୯୫୧ ମସିହାରେ ପ୍ୟାରିସ୍‌ରେ ଓ ୧୯୫୬ ମସିହାରେ ନେପଲସ୍ (Naples) ଠାରେ ଅନ୍ତର୍ଜାତୀୟ ସମ୍ମିଳନୀକୁ ସ୍ୱତନ୍ତ୍ର ଭାବେ ଆମନ୍ତ୍ରିତ ହୋଇ ସେଠାରେ ତାଙ୍କର ନବୀକରଣ ଅସ୍ତ୍ରୋପଚାର ପଦ୍ଧତି ସମ୍ପର୍କରେ ସବିଶେଷ ବିବରଣୀ ସହ ଉଦ୍‌ବୋଧନ ।

୫) ଭାରତ ସରକାରଙ୍କ ଦ୍ୱାରା ପ୍ରଦତ୍ତ ପଦ୍ମଭୂଷଣ ସମ୍ମାନ ଏବଂ ପରେ ପଦ୍ମବିଭୂଷଣ ସମ୍ମାନ ।

ସେ ଜଣେ ଯୋଗଜନ୍ମା ପୁରୁଷ ଥିଲେ । ଭେଷଜ ବିଜ୍ଞାନରେ ବିଶେଷ କରି ସ୍ତ୍ରୀ ଓ ପ୍ରସୂତି ବିଜ୍ଞାନରେ ତାଙ୍କର ''ଅଭିନବ ନବୀକରଣ''ର ଅବଦାନ ତାଙ୍କ ଜୀବନରେ ଏକ ଅମ୍ଳାନ ସ୍ମାରକୀ ଆଙ୍କି ଦେଇଛି, ଯାହା ଚିରଦିନ ଅମ୍ଳାନ ରହିବ ଓ ଚିକିତ୍ସକ ପିଢ଼ିଙ୍କୁ ଦିଗ୍‌ଦର୍ଶନ ଦେଇଚାଲିବ ।



# ବି. ଏନ୍. ପ୍ରସାଦ

ପ୍ରଫେସର ଡାକ୍ତର ଇନ୍ଦ୍ରମଣି ପତି

ଭାରତର ଯେଉଁ କେତେକ ମୁଷ୍ଟିମେୟ ବୈଜ୍ଞାନିକ ନିଜର ପ୍ରତିଭା ବଳରେ ଆନ୍ତର୍ଜାତିକ ଖ୍ୟାତିର ଅଧିକାରୀ ହୋଇ ପାରିଛନ୍ତି, ଅଧ୍ୟାପକ ବି. ଏନ୍. ପ୍ରସାଦ ସେମାନଙ୍କ ମଧ୍ୟରେ ଅନ୍ୟତମ । ଊନବିଂଶ ଶତାବ୍ଦୀର ଶେଷବର୍ଷ, ଅର୍ଥାତ୍ ୧୮୯୯ ମସିହା ଜାନୁଆରୀ ୧୨ ତାରିଖରେ ଶ୍ରୀ ପ୍ରସାଦ ଉତ୍ତର ପ୍ରଦେଶର ଆଜମଗଡ଼ ଜିଲ୍ଲାର ମହମ୍ମଦାବାଦ ନାମକ ଏକ ଅଖ୍ୟାତ ପଲ୍ଲୀରେ ଜନ୍ମଗ୍ରହଣ କରିଥିଲେ । ଆଲ୍ଲାହାବାଦ ଓ ପାଟନା ପ୍ରଭୃତି ବିଭିନ୍ନ ସ୍ଥାନରେ ତାଙ୍କର 'ସ୍କୁଲ ଓ କଲେଜ ଜୀବନ ଅତିବାହିତ କରି ୧୯୨୦ ମସିହାରେ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଗଣିତ ଶାସ୍ତ୍ରରେ ସ୍ନାତକୋତ୍ତର ପାଠ୍ୟକ୍ରମରେ ଯୋଗଦାନ କଲେ । ୧୯୨୦ ରେ ପ୍ରଥମ ଭାଗ ଓ ୧୯୨୧ରେ ଶେଷଭାଗ ଏମ୍.ଏସସି. ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହେବାର ଗୌରବ ଲାଭକଲେ । ଏହାପରେ ତାଙ୍କୁ ଅନେକଆଡୁ ଚାକିରି ପାଇଁ ଡାକରା ଆସିଲା । ମାତ୍ର ତାଙ୍କର ଅସୀମଜ୍ଞାନ ପିପାସା ଯୋଗୁ ସେ ଚାକିରି ନକରି ଗବେଷଣା କରିବା ପାଇଁ ସେହି ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଗଣିତ ବିଭାଗରେ ଜଣେ ଗବେଷକ ଭାବରେ ଯୋଗ ଦେଲେ । ତାଙ୍କର ପ୍ରତିଭା ଓ ଜ୍ଞାନ ଯୋଗୁଁ ମାତ୍ର ବର୍ଷକ ପରେ ସେହି ବିଭାଗରେ ସେ ସହକାରୀ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ମାତ୍ର ୨ ବର୍ଷ ପରେ ସେ ତାଙ୍କର ପ୍ରଥମ ଶିକ୍ଷାକେନ୍ଦ୍ର ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟକୁ ଚାଲିଗଲେ ଏବଂ ଚାକିରି କାଳର ଅଧିକାଂଶ ସମୟ ପାଇଁ ସେ ତାକୁ ହିଁ ତାଙ୍କର କର୍ମକ୍ଷେତ୍ର ରୂପେ ବାଛିନେଲେ । ମଝିରେ ମାତ୍ର ୨ ବର୍ଷ ପାଇଁ ପାଟନା ଯିବାଛଡ଼ା ୧୯୨୪ ମସିହାରୁ ୧୯୬୧ ମସିହା ପର୍ଯ୍ୟନ୍ତ ସେ ସେହି ବିଶ୍ୱବିଦ୍ୟାଳୟର ଗଣିତ ବିଭାଗରେ ନିରବଚ୍ଛିନ୍ନଭାବରେ ସାଧନା କରିଥିଲେ ଏବଂ ସାରା ଭାରତରେ ଏହି ବିଭାଗକୁ ଗୋଟିଏ ଉନ୍ନତ ବିଭାଗ ଭାବରେ ଗଢ଼ିଥିଲେ ।

ତାଙ୍କର କାର୍ଯ୍ୟକାଳ ଭିତରେ ସେ ଜଣେ ଉଚ୍ଚକୋଟୀର ଗଣିତଜ୍ଞ ହିସାବରେ ନିଜକୁ ଦେଶ ଭିତରେ ଏବଂ ବାହାରେ ସୁପ୍ରତିଷ୍ଠିତ କରିଥିଲେ । ମାତ୍ର ୩୦ ବର୍ଷ ବୟସରେ ୧୯୨୯ ମସିହାରେ ସେ ଉଚ୍ଚତର ଗବେଷଣା ପାଇଁ ଇୟୁରୋପର ବିଭିନ୍ନ ସ୍ଥାନରେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଗଣିତ ବିଶେଷଜ୍ଞମାନଙ୍କ ସହିତ କାର୍ଯ୍ୟ କରିଥିଲେ । ପ୍ରଥମେ ସେ ଏଡ଼ିନ୍‌ବର୍ଗରେ ବିଶିଷ୍ଟ ଗଣିତଜ୍ଞ ହ୍ୱିଟ୍‌କରଙ୍କ ସହିତ କିଛିକାଳ କାର୍ଯ୍ୟ କଲା ପରେ ଲିଭରପୁଲ୍‌ର ବିଖ୍ୟାତ ଗଣିତଜ୍ଞ ଟିଚ୍‌ମାର୍ଶଙ୍କ ପାଖକୁ ଚାଲିଗଲେ । ତାଙ୍କ ସହିତ ପ୍ରାୟ ଏକବର୍ଷ ମାତ୍ର କାର୍ଯ୍ୟ କରି ସେ ଲିଭରପୁଲ୍‌ରୁ ପିଏଚ୍.ଡ଼ି. ଡିଗ୍ରୀ ଲାଭ କଲେ । ସେହି ସମୟରେ ପ୍ୟାରିସ୍‌ରେ ଅନେକ ବିଖ୍ୟାତ ଗଣିତଜ୍ଞ ଥାଆନ୍ତି । ସେମାନଙ୍କ ସହିତ ଗବେଷଣା କରିବାପାଇଁ ପ୍ରବଳ ବାସନା ହେବାରୁ ସେ ସେହି ୧୯୩୧ ରେ ପ୍ୟାରିସ୍ ଯାତ୍ରା କଲେ । ସେଠାରେ ମଧ୍ୟ ସେ ମାତ୍ର ଏକବର୍ଷ ମଧ୍ୟରେ ତାଙ୍କର ଅସାଧାରଣ କୃତିତ୍ୱ ଯୋଗୁଁ ଫ୍ରାନ୍ସର ବିଜ୍ଞାନ ପାଇଁ ସର୍ବୋଚ୍ଚ ଉପାଧି ଡି.ଏସ୍‌ସି. ଲାଭ କଲେ ।

ଡକ୍ଟର ପ୍ରସାଦଙ୍କର ଗବେଷଣା ଗଣିତ ଶାସ୍ତ୍ରର Analysis, Theory of Functions, Fourier Series ଓ Dirichlet Series ଭଳି କେତେକ ମୌଳିକ ଓ ଅତ୍ୟାଧୁନିକ ଦିଗଗୁଡ଼ିକରେ ପର୍ଯ୍ୟବସିତ । ସେ ପୃଥିବୀ ବିଖ୍ୟାତ ଗଣିତଜ୍ଞ ହ୍ୱିଟ୍‌କରଙ୍କ ସହିତ କେତେକ Absolute Abel Summability Method ଭଳି ଏକ ନୂତନ ଗାଣିତିକ ପଦ୍ଧତିର ଉଦ୍ଭାବନ କରିଛନ୍ତି । ନିଜେ ଏକାକୀ କନ୍‌ଜୁଗେଟ୍ ସିରିଜ୍ ବାହାର କରିବାର ଏକ ନୂତନ ସୂତ୍ର ବାହାର କଲେ; ଯାହାଦ୍ୱାରା କି ଗଣିତ ଶାସ୍ତ୍ରର ଏକ ଅନାବିଷ୍କୃତ ଦିଗରେ ଗବେଷଣା କରିବାର ପଥ ଉନ୍ମୁକ୍ତ ହେଲା । ତାଙ୍କର ଗବେଷଣାମୂଳକ ଅସଂଖ୍ୟ ପ୍ରବନ୍ଧ ଇଂଲଣ୍ଡ, ଆମେରିକା, ଜର୍ମାନୀ, ଫ୍ରାନ୍ସ ଓ ଇଟାଲୀ ପ୍ରଭୃତି ପୃଥିବୀର ପ୍ରସିଦ୍ଧ ଦେଶମାନଙ୍କର ବିଜ୍ଞାନ ପତ୍ରିକାରେ ପ୍ରକାଶିତ ହେବାରେ ଲାଗିଲା ଏବଂ ଇୟୁରୋପ ଓ ଆମେରିକାରେ ପ୍ରକାଶିତ ଗଣିତ ପୁସ୍ତକମାନଙ୍କରେ ସନ୍ନିବେଶିତ ହେଲା ।

ବିଶ୍ୱଦରବାରରେ ପ୍ରସିଦ୍ଧି ଲାଭ କଲାପରେ ୧୯୩୨ ମସିହାରେ ଡକ୍ଟର ପ୍ରସାଦ ଭାରତ ଫେରି ଆସିଲେ ଏବଂ ସେହି ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ଯୋଗଦେଇ ଗବେଷଣାରେ ଅଧିକାଂଶ ସମୟ ଅତିବାହିତ କଲେ । ତାଙ୍କର ବହୁମୁଖୀ ପ୍ରତିଭା ଓ ଉଚ୍ଚକୋଟୀର ଗବେଷଣାଜ୍ଞାନଯୋଗୁଁ ଭାରତର ବିଭିନ୍ନ ପ୍ରାନ୍ତରୁ ଗଣିତ ଅଧ୍ୟାପକମାନେ ପିଏଚ୍.ଡ଼ି. ଓ ଡି.ଏସ୍‌ସି. ପ୍ରଭୃତି କରିବାପାଇଁ ତାଙ୍କ ପାଖକୁ ଆସିବାରେ ଲାଗିଲେ ଏବଂ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ତାଙ୍କ ଗଣିତ ବିଭାଗ ଗୋଟିଏ "ଗବେଷଣା କଲେଜ" ଭାବରେ ପ୍ରସିଦ୍ଧିଲାଭ କଲା ।

ଗବେଷଣା ବ୍ୟତୀତ ସେ ଜଣେ ଅତି ପ୍ରବୀଣ ଶିକ୍ଷକ ହିସାବରେ ମଧ୍ୟ ସାରା ଭାରତରେ ପରିଗଣିତ ହେଲେ ଏବଂ ତାଙ୍କର ଅନେକ ଛାତ୍ର ଦେଶ ଭିତରେ ଓ ବାହାରେ ସୁନାମ ଅର୍ଜନ କଲେ । ଜଣେ ପ୍ରବୀଣ ଅଧ୍ୟାପକ ହିସାବରେ ସେ ଭାରତର ସବୁ ପ୍ରାନ୍ତର ବିଶ୍ୱବିଦ୍ୟାଳୟମାନଙ୍କରୁ ପରୀକ୍ଷକ, ବିଶେଷଜ୍ଞ ଓ ପ୍ରାର୍ଥୀ ମନୋନୟନ ପ୍ରଭୃତିରେ ସଂଶ୍ଳିଷ୍ଟ ହେଲେ ଏବଂ ଏହିପରି ବିଭିନ୍ନ ପଦବୀରେ ଇଂଲଣ୍ଡ, ଆୟାରଲାଣ୍ଡ, ଫ୍ରାନ୍ସ, ଜର୍ମାନୀ, ବେଲ୍‌ଜିୟମ୍, ହଲାଣ୍ଡ, ନରୱେ, ସ୍ୱିଡ଼େନ୍, ଡେନ୍‌ମାର୍କ, ଅଷ୍ଟ୍ରିଆ, ଇଟାଲୀ, ଯୁକ୍ତରାଷ୍ଟ୍ର ଆମେରିକା, ଦକ୍ଷିଣ ଆମେରିକା ଓ ମିଶର ପ୍ରଭୃତି ବହୁ ବିଭିନ୍ନ ଦେଶକୁ ନିମନ୍ତ୍ରିତ ହେବାରେ ଲାଗିଲେ ।

ସେହିପରି ବିଭିନ୍ନ ବୈଜ୍ଞାନିକ ପ୍ରତିଷ୍ଠାନରେ ମଧ୍ୟ ସେ ନିବିଡ଼ ଭାବରେ ସଂଶ୍ଳିଷ୍ଟ ହେଲେ । ଭାରତୀୟ ଜାତୀୟ ବିଜ୍ଞାନ ଏକାଡ଼େମୀର ଜଣେ ସର୍ବପୁରାତନ ସଦସ୍ୟ ହିସାବରେ ଏହାର ବିଭିନ୍ନ କମିଟିର ସଭ୍ୟ ଓ ପରେ ଏହାର ଉପସଭାପତି ଓ ସଭାପତି ହୋଇଥିଲେ । ଆଲ୍ଲାହାବାଦର ଗଣିତ ପରିଷଦର ସେ ପ୍ରତିଷ୍ଠାତା ସଭାପତି ଥିଲେ ଏବଂ ୧୯୬୧ ମସିହାରେ ଭାରତୀୟ ଗଣିତ ପରିଷଦର ସଭାପତି ହେଲେ । ଭାରତ ଓ ଭାରତୀୟ ବିଜ୍ଞାନ କଂଗ୍ରେସର ପ୍ରତିନିଧି ହିସାବରେ ସେ ଆନ୍ତର୍ଜାତିକ ବିଜ୍ଞାନ ସମ୍ମିଳନୀମାନଙ୍କରେ ଭାଗ ନେଇଛନ୍ତି । ୧୯୫୨ ମସିହାରେ ସେ ପ୍ରଥମ ଭାରତ ମହାସାଗରୀୟ ବିଜ୍ଞାନ କଂଗ୍ରେସ ପରିଷଦରେ ଯୋଗ ଦେଇଥିଲେ । ୧୯୫୪ ମସିହାରେ ସେ ଭାରତ ସରକାରଙ୍କର ପ୍ରତିନିଧି ହିସାବରେ ଦକ୍ଷିଣ ଆମେରିକାର ମଣ୍ଟେଭିଡ଼ୋଠାରେ ଅନୁଷ୍ଠିତ ହୋଇଥିବା ଅଷ୍ଟମ ୟୁନେସ୍କୋ (UNESCO)ର ସାଧାରଣ ଅଧିବେଶନରେ ଯୋଗ ଦେଇଥିଲେ । ୧୯୫୮ ମସିହାରେ ଗ୍ଲାସଗୋଠାରେ ବିଜ୍ଞାନର ଅଗ୍ରଗତି ନିମନ୍ତେ ହୋଇଥିବା ବ୍ରିଟିଶ୍ ବୈଜ୍ଞାନିକ ପରିଷଦର ଏକଶତବିଂଶତି ସମ୍ମିଳନୀରେ ଯୋଗ ଦେଇଥିଲେ । ୧୯୬୫ ମସିହାରେ ମଧ୍ୟ କ୍ୟାମ୍ବ୍ରିଜ୍‌ଠାରେ ଅନୁଷ୍ଠିତ ଏହି ସମ୍ମିଳନୀର ଏକଶତ ସପ୍ତବିଂଶତି ଅଧିବେଶନରେ ସେ ଯୋଗ ଦେଇଥିଲେ ଏବଂ ସେହିଠାରୁ ନିମନ୍ତ୍ରିତ ହୋଇ ନରୱେ, ସ୍ୱିଡ଼େନ୍, ଡେନ୍‌ମାର୍କ ଓ ଅଷ୍ଟ୍ରେଲିଆର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ଭାଷଣ ପ୍ରଦାନ କରିଥିଲେ ।

ଭାରତୀୟ ବିଜ୍ଞାନ କଂଗ୍ରେସର ଗଣିତ ଓ ପରିସଂଖ୍ୟାନ ଶାଖାର ସେ ୧୯୫୨ ରୁ ୧୯୫୫ ଓ ୧୯୫୮ ରୁ ୧୯୬୧ ମସିହା ପର୍ଯ୍ୟନ୍ତ ୬ ବର୍ଷକାଳ ସାଧାରଣ ସମ୍ପାଦକ ଥିଲେ ଏବଂ ଏହା ପୂର୍ବରୁ ୧୯୪୫ ମସିହାରେ ଏହାର ସଭାପତି ଥିଲେ ।

ତାଙ୍କର ବୈଜ୍ଞାନିକ ପ୍ରତିଭାଯୋଗୁଁ ସେ ଆନ୍ତର୍ଜାତିକ ସ୍ତରରେ ସର୍ବଶ୍ରେଷ୍ଠ ପଦବୀ ଏଫ୍.ଏନ୍.ଏ. ଓ ଏଫ୍.ଏନ୍.ଏ. ଏସ୍‌ସି. ପାଇଥିଲେ । ତାଙ୍କର ବିଜ୍ଞାନ ଓ ଶିକ୍ଷା ପ୍ରତି ବିଶିଷ୍ଟ ଅବଦାନଯୋଗୁଁ ୧୯୬୩ ମସିହାର ଗଣତନ୍ତ୍ର ଦିବସରେ ଭାରତର ରାଷ୍ଟ୍ରପତି ତାଙ୍କୁ "ପଦ୍ମଭୂଷଣ" ଉପାଧିରେ ଭୂଷିତ କରିଥିଲେ । ତାର ପରବର୍ଷ, ୧୯୬୪ ମସିହାରେ ଜଣେ ବିଶିଷ୍ଟ ବୈଜ୍ଞାନିକ ହିସାବରେ ସେ ରାଷ୍ଟ୍ରପତିଙ୍କ ଦ୍ୱାରା ଭାରତର ରାଜ୍ୟସଭାକୁ ସଦସ୍ୟ ରୂପେ ମନୋନୀତ ହୋଇଥିଲେ । ଜଣେ ବୈଜ୍ଞାନିକ ପକ୍ଷରେ ଏହାଠାରୁ ଆଉ ଅଧିକ କ'ଣ ଆଶା କରାଯାଇପାରେ ।

ଦେଶ ଓ ବିଦେଶରୁ ବହୁ ସମ୍ମାନର ଅଧିକାରୀ ଏହି ପ୍ରଖ୍ୟାତ ବୈଜ୍ଞାନିକଙ୍କୁ ଭାରତୀୟ ବିଜ୍ଞାନ କଂଗ୍ରେସ ୧୯୬୬ ମସିହାରେ ଚଣ୍ଡୀଗଡ଼ଠାରେ ଅନୁଷ୍ଠିତ ହୋଇଥିବା ଏହାର ତ୍ରିପଞ୍ଚାଶତ୍ (53rd) ଅଧିବେଶନରେ ସଭାପତି ରୂପେ ବରଣ କରି ତାଙ୍କୁ ଶେଷ ସମ୍ମାନ ପ୍ରଦର୍ଶନ କରିବାର ଗୌରବ ଅର୍ଜନ କରିଥିଲା । କାରଣ ଏହି ଅଧିବେଶନରେ ସଭାପତିତ୍ୱ କରିବାର ଅଳ୍ପକାଳ ପରେ ଏହି ମହାନ୍ ବୈଜ୍ଞାନିକଙ୍କର ମହାପ୍ରୟାଣ ଘଟିଲା । ଏହି କୃତବିଦ୍ୟ ବୈଜ୍ଞାନିକଙ୍କର ଗବେଷଣା ନିଷ୍ଠା ପ୍ରତ୍ୟେକ ବୈଜ୍ଞାନିକଙ୍କର ଆଦର୍ଶ ରୂପେ ପରିଗଣିତ ହେବା ବିଧେୟ ।





# ଥିରୁଭେଙ୍କଟ ରାଜେନ୍ଦ୍ର ସେଶାଦ୍ରି

**ଡକ୍ଟର ସୁବାସିନୀ ଲେଙ୍କା**

ରସାୟନ ବିଜ୍ଞାନରେ ଅବଦାନପାଇଁ ଯେଉଁମାନେ ଚିରସ୍ମରଣୀୟ ଏବଂ ପୂଜିତ ସେମାନଙ୍କ ମଧ୍ୟରେ ଥିରୁଭେଙ୍କଟ ରାଜେନ୍ଦ୍ର ସେଶାଦ୍ରି (T. R. Seshadri) ଅନ୍ୟତମ । ପ୍ରାକୃତିକ ଦ୍ରବ୍ୟ (Natural Product) ଉପରେ ତାଙ୍କର ଉଚ୍ଚକୋଟୀର ଗବେଷଣା ପାଇଁ ସେ ରସାୟନ ବିଜ୍ଞାନୀମାନଙ୍କ ମଧ୍ୟରେ ବିଖ୍ୟାତ । ଟି.ଆର୍. ସେଶାଦ୍ରି ଜନ୍ମ ଗ୍ରହଣ କରିଥିଲେ ତ୍ରିଚିର ନିକଟବର୍ତ୍ତୀ ଏକ ଛୋଟ ସହର କୁଲିତାଇଆଇ (Kulitaiai)ରେ, ଫେବୃୟାରୀ ୩, ୧୯୦୦ ଖ୍ରୀଷ୍ଟାବ୍ଦରେ । ସେ ତ୍ରିଚି ଓ ମନ୍ଦିର ସହର ଶ୍ରୀରଙ୍ଗାମ୍‌ରେ ବିଦ୍ୟାଳୟ ଶିକ୍ଷା ଶେଷ କରି ବି.ଏସ୍‌ସି. ଅନର୍ସ ପଢ଼ିବା ପାଇଁ ମାଡ୍ରାସସ୍ଥ (ଏବର ଚେନାଇ) ପ୍ରେସିଡ଼େନ୍ସି କଲେଜକୁ ଯାଇଥିଲେ । ସେ ମାଡ୍ରାସ ବିଶ୍ୱବିଦ୍ୟାଳୟରୁ ବି.ଏସ୍‌ସି. ଓ ଏମ୍.ଏସ୍‌ସି. ଡିଗ୍ରୀ ପ୍ରାପ୍ତ ହୋଇଥିଲେ । ଖୁବ୍ କମ୍ ବୟସରୁ ସେ ଗବେଷଣା ପ୍ରତି ଆଗ୍ରହୀ ଥିବାରୁ ଏମ୍.ଏସ୍‌ସି. ପରେ ତାଙ୍କ ଅଧ୍ୟାପକ ବି.ବି. ଢେ ଗବେଷଣା କରିବା ନିମନ୍ତେ ତାଙ୍କ ଗବେଷଣାଗାରରେ ସ୍ଥାନ ଦେଇଥିଲେ ।

୧୯୨୭ ମସିହାରେ ସେଶାଦ୍ରି ମାଲେରିଆ ରୋଗର ଔଷଧ ଏବଂ ଆନ୍ଥୋସିଆନିନ୍ ପ୍ରସ୍ତୁତି ଉପରେ ଗବେଷଣା କରିବା ପାଇଁ ଆମେରିକାର ମାଞ୍ଚେଷ୍ଟର ବିଶ୍ୱବିଦ୍ୟାଳୟରେ ସାର୍ ରବର୍ଟ ରବିନ୍‌ସନ୍‌ଙ୍କ ସହ ଯୋଗ ଦେଇଥିଲେ । ଏଥିପାଇଁ ସେ ବୃତ୍ତି ମଧ୍ୟ ପାଇଥିଲେ । ସେଠାରେ ସେ ଡକ୍ଟରେଟ୍ ଡିଗ୍ରୀ ହାସଲ କଲାପରେ ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରେ ନୋବେଲ ପୁରସ୍କାରପ୍ରାପ୍ତ ଫ୍ରିଟ୍‌ଜ ପ୍ରେଗଲଙ୍କଠାରୁ ଜୈବିକ ସୂକ୍ଷ୍ମ ବିଶ୍ଳେଷଣ ବା ଅର୍ଗାନିକ ମାଇକ୍ରୋଆନାଲିସିସ୍ ଉପରେ ଶିକ୍ଷା ଲାଭ କରିଥିଲେ ଏବଂ ଜି. ବାରଗରଙ୍କ ସହିତ ଆଲ୍‌କାଲଏଡ୍ ରେଟ୍ରୋସିନ୍ ଉପରେ ଗବେଷଣା କରିଥିଲେ । ସେଶାଦ୍ରି ଭାରତ ଫେରିଆସିଥିଲେ ୧୯୩୦ ମସିହାରେ । କୋଇମ୍ବାଟୋରରେ ଉଦ୍ଭିଦ ରସାୟନ ବା ପ୍ଲାଣ୍ଟ କେମିଷ୍ଟ୍ରୀ ଉପରେ ଗବେଷଣା କରିଥିଲେ । ୧୯୩୪ ମସିହାରେ ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ ଯୋଗଦେଇ ଏକ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଗବେଷଣା କେନ୍ଦ୍ର ସ୍ଥାପନ କରିଥିଲେ । ସେଠାରେ ଫ୍ଲାଭୋନୋଏଡ୍ (Flavonoids) ଉପରେ ଗବେଷଣା

କରାଯାଉଥିଲା । ତପ୍ରରେ ସେ ନିମନ୍ତ୍ରିତ ହେଲେ ଦୂରଦୃଷ୍ଟି ସଂପନ୍ନ ସାର୍ ମାଓରିକ୍ ଗ୍ୱେର୍ଙ୍କ ଦ୍ୱାରା । ତାଙ୍କ ନିମନ୍ତ୍ରଣ ରକ୍ଷାକରି ସେ ହେଲେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନ ବିଭାଗର ବିଭାଗୀୟ ମୁଖ୍ୟ । ଖୁବ୍ କମ୍ ସମୟ ଭିତରେ ସ୍ୱଚ୍ଛ ଅର୍ଥରେ ସେ ପୃଥିବୀ ବିଖ୍ୟାତ ଗବେଷଣାଗାର ସ୍ଥାପନ କଲେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ । ସେଠାରେ ମୁଖ୍ୟ ଗବେଷଣା ଥିଲା ଟର୍‌ପେନଏଡ୍, ଆଲ୍‌କାଲଏଡ୍ ଏବଂ କୁଇନୋନୋଏଡ୍ ଉପରେ । ୭ ବର୍ଷ ଧରି ହୃଦ୍‌ରୋଗରେ ଆକ୍ରାନ୍ତ ଥିବା ସତ୍ତ୍ୱେ ସେ ଚାକିରିରୁ ଅବସର ନେବା ପରେ ମଧ ମର୍ଯ୍ୟାଦା ସଂପନ୍ନ ଏମିରିଟସ୍ ପ୍ରଫେସର ହିସାବରେ ୧୯୭୨ ମସିହା ପର୍ଯ୍ୟନ୍ତ ଗବେଷଣାରତ ଥିଲେ । ତପ୍ରରେ ୩ ବର୍ଷ ଧରି ହୃଦ୍‌ରୋଗରେ ପୀଡ଼ିତ ଥାଇ ମଧ କିଛି ସମୟ ପାଇଁ ରାଜନୀତିରେ ମଧ ଭାଗ ନେଇଥିଲେ ।

ଫୁଲର ବିଭିନ୍ନ ରଂଗ ଉପରେ ଗବେଷଣା କରିବା ପାଇଁ ତାଙ୍କର ବିଶେଷ ଆଗ୍ରହ ଥିଲା । ତେଣୁ ସେ ରାଣୀକ୍ଷେତ, ହାଇଦ୍ରାବାଦ ଏବଂ ଦାର୍ଜିଲିଂ ଇତ୍ୟାଦି ସ୍ଥାନରୁ ରଙ୍ଗିନ ଫୁଲମାନ ସଂଗ୍ରହ କରି ତା'ର ରଙ୍ଗ ଉପରେ ଗବେଷଣା କରୁଥିଲେ । ଗୋଟିଏ ଗବେଷଣା ପତ୍ରିକାରେ ସେ ବର୍ମାର (ଏବର ମିଆଁମାର) ରକ୍ତ ଚନ୍ଦନ ଉପରେ ପ୍ରବନ୍ଧ ପ୍ରକାଶ କରିଥିଲେ । ଫୁଲର ନାମକରଣ କରିବାରେ ସେ ଧୁରନ୍ଧର ଥିଲେ । ତା'ର ଉଦାହରଣ ମିଳେ ଭାରତୀୟ ପଳାଶ ଫୁଲରୁ । ସେ ପଳାଶ ଫୁଲର ନାମ ପାଲାସିଟ୍ରିନ୍ ବୋଲି ନାମିତ କରିଥିଲେ । ସେଶାଦ୍ରି ଭାରତୀୟ ଜାତୀୟ ବିଜ୍ଞାନ କଂଗ୍ରେସରେ ସଭାପତିତ୍ୱ କରିଥିଲେ ୧୯୬୭ ରେ । ତାଙ୍କ ଅଭିଭାଷଣରେ ସେ ଦେଶର ସମୃଦ୍ଧିରେ ଗବେଷଣା ଓ ବିଶ୍ୱବିଦ୍ୟାଳୟମାନଙ୍କର ଭୂମିକା ଉପରେ ଆଲୋକପାତ କରିଥିଲେ । ଶିକ୍ଷାଦାନ ସହିତ ଏହି ଦୁଇଟି କାର୍ଯ୍ୟ ଉପରେ ଅଧିକ ଗୁରୁତ୍ୱ ଦେବା ପାଇଁ ସେ ଉପଦେଶ ଦେଇଥିଲେ । ବୈଜ୍ଞାନିକ ମନୋଭାବରେ ଉଦ୍‌ବୁଦ୍ଧ ହେବାପାଇଁ ପ୍ରେରଣା ଦେଇଥିଲେ ସେ । ତାଙ୍କ ମତରେ ବିଜ୍ଞାନ ଏବଂ ଆଧାତ୍ମିକତା ଦୁଇଟି ଅଙ୍ଗାଙ୍ଗୀଭାବରେ ଜଡ଼ିତ । ମାନବ ଜାତିର ଉନ୍ନତି ପାଇଁ ଏ ଦୁଇଟି ଅପରିହାର୍ଯ୍ୟ ।

ପ୍ରତ୍ୟେକ ଗବେଷଣାକୁ ତନ୍ନତନ୍ନ କରି ଜାଣିବା, ମିଳିତଭାବରେ ବିଶ୍ଳେଷଣ କରିବା ଏବଂ ଠିକ୍ ଫଳାଫଳକୁ ଉପସ୍ଥାପନା କରିବା ଥିଲା ତାଙ୍କର ଲକ୍ଷ୍ୟ । ତାଙ୍କର ଶେଷ ଗବେଷଣା ସ୍ପେକ୍ଟ୍ରୋସ୍କୋପିକ୍ ପଦ୍ଧତି ଉପରେ ପର୍ଯ୍ୟବସିତ ଥିଲା । ଅର୍ଦ୍ଧଶତାବ୍ଦୀ ଧରି ସେ ଗବେଷଣା କରିଥିଲେ ଓ ୧୦୦୦ରୁ ଅଧିକ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ କରିଥିଲେ । ଆନ୍ଧ୍ରପ୍ରଦେଶ ଓ ଦିଲ୍ଲୀରେ ସ୍ଥାପିତ ଦୁଇଟି ପୃଥିବୀ ବିଖ୍ୟାତ ଗବେଷଣାଗାର ପ୍ରତିଷ୍ଠା ପାଇଁ ସେ ସମସ୍ତଙ୍କର ଚିରପୂଜ୍ୟ ଏବଂ ଚିରନମସ୍ୟ । ୧୯୭୫ ମସିହାରେ ତାଙ୍କର ଦେହାନ୍ତ ହୋଇଥିଲା ।





# କୋଲାଚାଲା ସୀତା ରାମାୟା

## ଡକ୍ଟର ସୁବାସିନୀ ଲେଙ୍କା

କୋଲାଚାଲା ସୀତା ରାମାୟା (Kolachala Sita Ramayya) ଭାରତରେ ଜନ୍ମ ହୋଇଥିଲେ, କିନ୍ତୁ ଆମେରିକାରେ ରସାୟନ ବିଜ୍ଞାନରେ ତାଲିମପ୍ରାପ୍ତ ହୋଇ ସୋଭିଏଟ୍ ଟ୍ୟାଙ୍କ ପାଇଁ କାର୍ଯ୍ୟକ୍ଷମ ଇନ୍ଧନ (fuel) ଓ ପିଚ୍ଛିଳୀକାରକ ପଦାର୍ଥ (lubricant) ଉପରେ ଗବେଷଣାତ୍ମକ କାର୍ଯ୍ୟ କରିଥିଲେ । ପରୀକ୍ଷାଗାରରେ ସେ ହଠାତ୍ ଉପଲବ୍ଧି କଲେ ଯେ ପିଚ୍ଛିଳୀକାରକ ପଦାର୍ଥରେ ଥିବା ଅଣୁମାନଙ୍କ ମଧ୍ୟରେ ଆକର୍ଷଣ ତା'ର ମାଧ୍ୟମ ଉପରେ ନିର୍ଭର କରେ ଏବଂ ଏହି ଆକର୍ଷଣ ଯୋଗୁଁ ମାଧ୍ୟମର ଅବସ୍ଥା ବଦଳି ଯାଇଥାଏ । ଘରକୁ ଫେରି ସେ ନିଜ ମନକୁ ଆସିଥିବା କଥା ଗୋଟିଏ କାଗଜରେ ରେଖା ମାଧ୍ୟମରେ ଆଙ୍କିଥିଲେ ଏବଂ କହିଥିଲେ ଯେ ପିଚ୍ଛିଳୀକାରକ ପଦାର୍ଥ ହେଉଛି ଏକପ୍ରକାର ସ୍ୱତନ୍ତ୍ର ପ୍ଲାଷ୍ଟିକ ଅବସ୍ଥାର ପଦାର୍ଥ । ଏହା ପୂର୍ବରୁ ଗାଣିତିକ ମଡ୍ରେଲ ତାଙ୍କର ଏହି ତଥ୍ୟକୁ ଦର୍ଶାଇ ପାରିନଥିଲା । ସୀତା ରାମାୟା ଓ ତତ୍କାଳୀନ ଗବେଷକମାନଙ୍କର ଧାରଣା ଥିଲା ଯେ ମାଛମାନେ ଏକ୍ୱାରିୟମ ଭିତରେ ଗତି କରିବା ସମୟରେ ନିୟମିତ ବ୍ୟବଧାନରେ ଧକ୍କା ଲାଗି ଯାଆନ୍ତି, ସେହିଭଳି ପିଚ୍ଛିଳୀକାରକ ପଦାର୍ଥରେ ଥିବା ଅଣୁ ଗତି କଲାବେଳେ ଧକ୍କା ଲାଗିଯାଆନ୍ତି । କିନ୍ତୁ ଅଣୁମାନଙ୍କ ମଧ୍ୟରେ ଗତି ଆକର୍ଷଣ ମାଧ୍ୟମ ଉପରେ ନିର୍ଭର କରୁଛି । ତେଣୁ ମାଧ୍ୟମକୁ ଠିକ୍ ଭାବରେ ବୁଝିବା ପାଇଁ ଏକ ନୂତନ ପରୀକ୍ଷା ପଦ୍ଧତିର ଆବଶ୍ୟକତା ଅଛି ବୋଲି ସେ ଭାବିଥିଲେ ଓ ଏହା ଉପରେ ପରୀକ୍ଷା ନିରୀକ୍ଷା କରିଥିଲେ ।

ଥରେ ନିଜ ଘରର ଛାତ ଉପରେ ବାୟୁ ଆକ୍ରମଣ ତତ୍ତ୍ୱାବଧାରକ (air-raid warden) ଭାବରେ କାର୍ଯ୍ୟ ସଂପାଦନ କରୁଥିବା ସମୟରେ ଯୋଡ଼ାଏ ଚିମୁଟା ସାହାଯ୍ୟରେ ଗୋଟିଏ ଦାହକ ବୋମାକୁ ଧରିଲେ ଏବଂ ଚକ୍‌ଚକ୍ କରୁଥିବା କିଛି ପଦାର୍ଥକୁ ଛାତ ଉପରେ ଗଡ଼ାଇ ଗଡ଼ାଇ ପୂର୍ବରୁ ତିଆରି ହୋଇଥିବା ଗୋଟିଏ ବାଲିବାକ୍ସକୁ ନିକ୍ଷେପ

କଲେ । ଏହାକୁ ମାରଣାସ୍ତ୍ର ଭାବରେ ଗ୍ରହଣ ନକରି ଏହି ସ୍ଫୁଲିଙ୍ଗର ପିଚ୍ଛିଳୀକାରକ ପଦାର୍ଥ ସହିତ କି ସମ୍ପର୍କ ଅଛି ତାହା ଅନୁଧ୍ୟାନ କଲେ । ଅନ୍ଧାର ଗୃହରେ ଏହି ଭାବନା ତାଙ୍କର ଉଦ୍ରେକ ହେଲା ଯେ ଦାହକ ବୋମାର ସ୍ଫୁଲିଙ୍ଗ ବା ଅଗ୍ନିକଣା ଧାତୁ ଝଲେଇ କରିବା ସମୟରେ ଉତ୍ପନ୍ନ ହେଉଥିବା ଅଗ୍ନିକଣା ଭଳି ଦିଶେ, କମାର ହାତୁଡ଼ି ପିଟିବା ସମୟରେ ଅଗ୍ନିକଣା ଦୃଶ୍ୟମାନ ହୁଏ । ତରଳଧାତୁ ସ୍ପ୍ରେ କଲାବେଳେ, ଉଜ୍ଜ୍ୱଳ ଲାଭା ଆଗ୍ନେୟଗିରିରୁ ପ୍ରବାହିତ ହେଲାବେଳେ ଏହି ଦୃଶ୍ୟ ପରିଲକ୍ଷିତ ହୁଏ । ପୃଥିବୀ ଅଭ୍ୟନ୍ତରରୁ ଯେଉଁ ଆଲୋକର ଉଦ୍‌ଭାସ ଦୃଶ୍ୟମାନହୁଏ ତାହାକୁ ରାମାୟା ଅନୁଧ୍ୟାନ କରିଥିଲେ । ସେ ସମୁଦ୍ରତଳ ଭାଗରେ ଥିବା ଉତ୍ତପ୍ତ ମାଗମାକୁ କଳ୍ପନା କରୁଥିଲେ । ସେ ଭାବୁଥିଲେ ସୂର୍ଯ୍ୟ ଭାସମାନ - ତା'ଭିତରୁ ସୌର ଆଲୋକଶିଖା ବିଚ୍ଛୁରିତ ହେଉଛି । ସେ ଏହାକୁ ବସ୍ତୁର ଏକ ନୂତନ ଅବସ୍ଥା ବା ପ୍ଲାଷ୍ଟିକ ଅବସ୍ଥା ବୋଲି ଭାବୁଥିଲେ । ପରବର୍ତ୍ତୀକାଳରେ ବସ୍ତୁର ଏହା ପ୍ଲାଜମା ଅବସ୍ଥା ବୋଲି କୁହାଗଲା । ସୀତାରାମାୟାଙ୍କର ଏହି ଆବିଷ୍କାର ପରେ ପ୍ଲାଷ୍ଟିକ ମାଧ୍ୟମର ଧର୍ମ ଉପରେ ଅଧାର କରି ''କେମାଟୋଲୋଜି'' ନାମକ ଏକ ନୂତନ ବିଜ୍ଞାନ ଶାଖା ସୃଷ୍ଟି ହେଲା । ଏହାକୁ ପ୍ରଯୁକ୍ତି ଜ୍ଞାନ କୌଶଳରେ ଦାହ୍ୟ ଓ ପିଚ୍ଛିଳୀକାରକ ପଦାର୍ଥର ବ୍ୟବହାରଜନିତ ବିଜ୍ଞାନ ବା 'ମୋଟର ଅଏଲର କେମିଷ୍ଟ୍ରି' ବୋଲି କୁହାଗଲା ।

କୋଲାଚାଲା ସୀତା ରାମାୟାଙ୍କ ପିତା ଆନ୍ଧ୍ରପ୍ରଦେଶରେ ଗୋଟିଏ ଗାଁରେ ପୁରୋହିତ ଥିଲେ । ତାଙ୍କ ମତରେ ପ୍ରତ୍ୟେକ କାର୍ଯ୍ୟକୁ ଭଲଭାବରେ କରିବା ହେଉଛି ପ୍ରକୃତ ଯୋଗ । ସେ ସୀତା ରାମାୟାଙ୍କୁ ଲାଲ୍ ଗୋବିନ୍ଦ ବୋଲି ଡାକୁଥିଲେ । ସତ୍ୟାଗ୍ରହ ଦ୍ୱାରା ତାଙ୍କ ବାପା ତାଙ୍କୁ ପ୍ରଭାବିତ କରିଥିଲେ । ତେଣୁ ସେ ସଂତ୍ରାସବାଦୀଙ୍କ ଠାରୁ ରକ୍ଷା ପାଉଥିଲେ । ସ୍କୁଲ ପାଠପଢ଼ା ସରିଲା ପରେ ତାଙ୍କ ପିତା ତାଙ୍କୁ ଅଧିକ ପାଠ ପଢ଼ିବାପାଇଁ ମାଡ୍ରାସ ପଠାଇଲେ । ତାଙ୍କର ଉଦ୍ଦେଶ୍ୟ ଥିଲା କାହାଠାରୁ ସାହାଯ୍ୟ ନନେଇ ତାଙ୍କ ପୁଅ ନିଜ ଗୋଡ଼ରେ ଛିଡ଼ା ହେବ ।

ଉଚ୍ଚ ପଦବୀରେ ଥିବା ତାଙ୍କର ଜଣେ ସଂପର୍କୀୟ ରାମାୟାଙ୍କ ପାଇଁ ଖଣ୍ଡିଏ ଚିଠି ଜଣେ ଇଂରେଜଙ୍କ ପାଖକୁ ଲେଖିଥିଲେ । ବିଶ୍ୱବିଦ୍ୟାଳୟ ପ୍ରବେଶିକା ପରୀକ୍ଷାରେ ତାଙ୍କପ୍ରତି ଅବିଚାର ନକରିବା ପାଇଁ ସେହି ଚିଠିରେ ସେ ଉଲ୍ଲେଖ କରିଥିଲେ । ସେ ବିଶ୍ୱବିଦ୍ୟାଳୟର ଖେଳାଳି ହିସାବରେ ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ସେ ପ୍ରକୃତରେ ମାଡ୍ରାସ ବିଶ୍ୱବିଦ୍ୟାଳୟକୁ ପଦାର୍ଥ ବିଜ୍ଞାନ ଓ ରସାୟନବିଜ୍ଞାନ ଅଧ୍ୟୟନ କରିବାକୁ ଆସିଥିଲେ । ଖେଳରେ ମନୋନିବେଶ କରୁଥିବାରୁ ସେ ରସାୟନବିଜ୍ଞାନରେ ବେଶୀ ନମ୍ବର ରଖିପାରୁନଥିଲେ । ସେତେବେଳେ ବିଦେଶଯାଇ ପାଠ ପଢ଼ିବା ମଧ୍ୟ ସହଜ ନଥିଲା ।

ମାଡ୍ରାସରେ ଥିବା ସମୟରେ ସେ ପିତାଙ୍କର ମୃତ୍ୟୁ ଖବର ପାଇ ଷ୍ଟିମରରେ ଆସି ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗ ଦେଇଥିଲେ । ତାଙ୍କ ଭାଇ ଚାହୁଁନଥିଲେ ରାମାୟା ବିଦେଶ ଯାଇ ପାଠ ପଢ଼ନ୍ତୁ । ଏଥିରେ ସେ ହତୋତ୍ସାହିତ ହେଲେ ନାହିଁ । ବାହାରକୁ ଗଲେ ତିନିଟି ଉପଦେଶ ମାନିବାକୁ ତାଙ୍କ ପିତା ତାଙ୍କୁ କହିଥିଲେ । ତାହାହେଲା, ''ମଦ୍ୟପାନ କରିବୁନି, ସିଗାରେଟ୍ ଖାଇବୁନି, ବିଦେଶିନୀକୁ ବାହା ହେବୁନି ।'' ଲାଲ କେବେ ମଦ ପିଇନଥିଲେ । ତମାଖୁ ବ୍ୟତୀତ ସେ ଅନ୍ୟ କୌଣସି ମାଦକ ଦ୍ରବ୍ୟ ସେବନ କରିନଥିଲେ । କିନ୍ତୁ ଦୁଇଟି ବିଦେଶିନୀଙ୍କୁ ବିବାହ କରିଥିଲେ ।

ମାଡ୍ରାସରେ ରହୁଥିବା ଜଣେ ଇଂରେଜ ଆମେରିକାର ଜଣେ ବନ୍ଧୁଙ୍କୁ ରାମାୟାଙ୍କ ପାଇଁ ଚିଠିଟିଏ ଲେଖିଥିଲେ । ବନ୍ଦରରେ କାମ କରୁଥିବା ଜଣେ ବ୍ୟକ୍ତି ଜାହାଜର କପ୍ତାନଙ୍କୁ ଅନୁରୋଧ କରିଥିଲେ ରାମାୟାଙ୍କୁ ଚାକିରିଟିଏ ଦେବାପାଇଁ । ତାହା ଦ୍ୱାରା ସେ ଯାତାୟାତ ଖର୍ଚ୍ଚ ତୁଲାଇ ପାରିବେ । ଯାତ୍ରା କରିବା ସମୟରେ ଇଞ୍ଜିନ୍‌ରେ ବ୍ୟବହୃତ ଇନ୍ଧନ ଓ ପିଚ୍ଛିଳୀକାରକ ପଦାର୍ଥ ବ୍ୟବହାର ନକଲେ ଇଞ୍ଜିନରେ ସଂଯୋଗ ହୋଇଥିବା ଯନ୍ତ୍ରାଂଶଗୁଡ଼ିକ ଅକାମୀ ହୋଇଯିବା କଥା ସେ କହିଲେ । ଜାହାଜର କପ୍ତାନ ତାଙ୍କୁ କିଛି ପାରିଶ୍ରମିକ ଦେଇନଥିଲେ । ନିୟୁୟୋର୍କରେ ସେ ହୋଟେଲରେ ବାସନମାଜି, ଜିନିଷ ପତ୍ର ବୁହାବୋହି କରି ପାଉଥିବା ପାରିଶ୍ରମିକରେ କଷ୍ଟରେ ଚଳି ଯାଉଥିଲେ । ତା'ପରେ ଚିକାଗୋ ବିଶ୍ୱବିଦ୍ୟାଳୟରେ ନାଁ ଲେଖାଇଲେ । ନିଜ ରୋଜଗାରରେ ସେ ବହି କିଣୁଥିଲେ ଓ ଋଣ କରିଥିବା ଅର୍ଥ ଶୁଝୁଥିଲେ । ଭୋକିଲା ପେଟରେ, ପାର୍କ ବେଞ୍ଚରେ ଶୀତରେ ରାତି କଟାଉଥିଲେ । ଭିକାରି ଭଳି ଚଳିମଧ୍ୟ ସେ ଭାଙ୍ଗି ପଡୁନଥିଲେ । ସେ ଭାବୁଥିଲେ ଯେ ସେ ଆମେରିକାନ୍ ହୋଇସାରିଛନ୍ତି । ତାଙ୍କର ଲକ୍ଷ୍ୟ ଥିଲା କୌଣସିମତେ ପାଠପଢ଼ା ଶେଷ କରିବା ।

ଚିକାଗୋରେ ତାଙ୍କୁ ପାଛୋଟି ନେଇଥିବା ଜଣେ ସିଂହଳୀୟ (ଶ୍ରୀଲଙ୍କାବାସୀ) ପୋନ୍ନାମ୍ବାଲାମଙ୍କ ସହ ତାଙ୍କର ବନ୍ଧୁତା ହେଲା । ସେ ରାମାୟାଙ୍କୁ ଭାରତୀୟମାନଙ୍କ ସହିତ ଚିହ୍ନା କରାଇଦେଲେ । ଥରେ ଗୋଟିଏ ଭୋଜିରେ ସିଣ୍ଡି (Cindy) ନାମକ ଜଣେ ଅପୂର୍ବ ସୁନ୍ଦରୀ ଯୁବତୀଙ୍କ ସହ ରାମାୟାଙ୍କର ଦେଖା ହେଲା । ସିଣ୍ଡି ରହୁଥିବା ଘର ଛାଡୁଥିଲେ । ସେ ଲିଜ୍ ରଦ୍ଦ ନକରି ସେହି ଘରକୁ ରାମାୟାଙ୍କ ରହିବା ପାଇଁ ଦେଇଥିଲେ । ବେଞ୍ଚ ଉପରେ ରାତ୍ରିଯାପନ କରିବାଠାରୁ ଛାତ ତଳେ ଆଶ୍ରୟ ନେବାକୁ ଶ୍ରେୟସ୍କର ଭାବିଲେ ସେ । ପୁଣିଥରେ ସିଣ୍ଡିଙ୍କ ସହିତ ଗୋଟିଏ ଦାତବ୍ୟ ଭୋଜିରେ ଭେଟ ହେଲା । କିଛି ଦିନ ପରେ

ସିଣ୍ଡିକୁ ରାମାୟା ବିବାହ କଲେ । କିନ୍ତୁ ଖୁବ୍ ଶୀଘ୍ର ତାଙ୍କ ସମ୍ପର୍କରେ ଫାଟ ସୃଷ୍ଟି ହେଲା ।

କିଛି ଦିନ ପରେ ଆଉ ଗୋଟିଏ ଭୋଜିରେ ଯୋଗ ଦେବା ପାଇଁ ସିଣ୍ଡି ରାମାୟାଙ୍କୁ କହିଲେ । ରାମାୟାଙ୍କ ଗବେଷଣା ପାଇଁ କିଛି ସାହାଯ୍ୟ ପାଇବେ ଭାବି ଜଣେ ବ୍ୟକ୍ତିଙ୍କ ସହ ଚିହ୍ନା କରାଇଦେଲେ । ରାମାୟା ସେତେବେଳେ ଯାନ୍ତ୍ରିକ ପଦ୍ଧତିରେ ପିଚ୍ଛିଳୀକାରକ ପଦାର୍ଥ ନଷ୍ଟ ନହେବା ପାଇଁ ଗବେଷଣା କରୁଥିଲେ । ସେ ଆବିଷ୍କାର କଲେ ଯେ ଖୁବ୍ ଶୀଘ୍ର ଅଠାଳିଆ (colloidal) ମାଧ୍ୟମରେ ସଲ୍‌ରୁ ଜେଲ୍ ଓ ଜେଲ୍‌ରୁ ସଲ୍ ପରିବର୍ତ୍ତିତ ହୋଇ ପାରୁଛି । ସେତେବେଳେ ଗବେଷଣା ପାଇଁ ଅର୍ଥର ଆବଶ୍ୟକ ଥିଲା । ଫାଉଣ୍ଡେସନ୍ ଫେଲୋସିପ୍ ପାଇଯିବାରୁ ତାଙ୍କର ଆର୍ଥିକ ସଙ୍କଟ ଦୂର ହୋଇଗଲା । ୧୯୨୪ ମସିହା ଜୁନ୍ ମାସରେ ଚିକାଗୋ ବିଶ୍ୱବିଦ୍ୟାଳୟରୁ ସେ ଏମ୍.ଏସ୍. ଡିଗ୍ରୀ ପ୍ରାପ୍ତ ହେଲେ । ସେ ପେଟେଣ୍ଟ କରିବାର ଯୋଗ୍ୟତା ହାସଲ କଲେ । ମୋଟର ଅଏଲ୍‌ର କାର୍ଯ୍ୟ ସମୟ ବଢ଼ାଇବା ବିଷୟରେ ପେଟେଣ୍ଟ କରିବାରେ ଲାଗିପଡ଼ିଲେ । ଗୋଟିଏ ବିଖ୍ୟାତ ଫାର୍ମ ତାଙ୍କୁ ଉଚ୍ଚ ଦରମା ଓ ପଦୋନ୍ନତି ଭିତ୍ତିକ ଚାକିରି ଦେଲା । ସିଣ୍ଡି ବର୍ତ୍ତମାନ ତା' ପିତାମାତାଙ୍କୁ ରାମାୟାଙ୍କ ବିଷୟରେ କହିବାକୁ ସ୍ଥିର କଲେ । ରାମାୟା କିଛି ବିଷୟ ଚିନ୍ତା ନକରି ଭାରତକୁ ଯିବାପାଇଁ ସିଣ୍ଡିଙ୍କୁ କହିଲେ । ସିଣ୍ଡି ନିରବ ରହିବାରୁ ରାମାୟା ନିଜ ଜିନିଷପତ୍ର ନେଇ ଅଭିମାନରେ ଚାଲିଗଲେ । କାରଣ ସେ ସିଣ୍ଡିଙ୍କୁ ଖୁବ୍ ଭଲ ପାଉଥିଲେ ।

କିଛି ଦିନ ପରେ ଋଷିଆରେ ଗୋଟିଏ ଆମେରିକାନ ଫାର୍ମରେ କାମ କରୁଥିବା ଜୋ' (Joe) ଙ୍କୁ ଭେଟିଲେ । ରାମାୟା ତିନିଦିନ ଜୋଙ୍କ ସହିତ କଟାଇବା ସମୟରେ ମାର୍କ୍ସ ଏବଂ ଲେନିନ୍‌ଙ୍କ ବିଷୟରେ କିଛି ପଢ଼ିଲେ । ତା'ପରେ ଚିକାଗୋକୁ ଫେରି ସେ ସିଣ୍ଡିଙ୍କୁ ଗୋଟିଏ ଫାର୍ମକୁ ଡାକିଲେ ଯେଉଁଠାରେ ସେ ସ୍ନାତକ ଶିକ୍ଷା ସମୟରେ ଚାକିରି କରୁଥିଲେ । ୟେଲ୍ (Yale)ରେ ଗୋଟିଏ ଗବେଷଣାଗାର ତାଙ୍କ ପାଇଁ ପ୍ରସ୍ତୁତ କରାଗଲା । ସେଠାରେ ସେ ଦ୍ୱିତୀୟ ମାଷ୍ଟର ଡିଗ୍ରୀ ହାସଲ କଲେ । ତାଙ୍କ ଗବେଷଣାଗାର, ସହକର୍ମୀ, ଯନ୍ତ୍ରପାତି ସବୁକିଛି ଉଚ୍ଚମାନର ଥିଲା । ତାଙ୍କ ଗବେଷଣା ଥିଲା ମୋଟର ଅଏଲ୍ ଦ୍ୱାରା ଇଞ୍ଜିନ୍ ଅବକ୍ଷୟ ହେବା ଉପରେ । ସେଠାରେ ସେ ନୂତନ ପ୍ରକାର ପିଚ୍ଛିଳୀକାରକ ପଦାର୍ଥ ତିଆରି କଲେ ଯାହା ବିଭିନ୍ନ କାର୍ଯ୍ୟ କରିବା ସମୟରେ ଅବସ୍ଥାକୁ ନିୟନ୍ତ୍ରଣ କରିପାରେ । ରାମାୟାଙ୍କୁ ନିର୍ଦ୍ଦେଶ ଥିଲା ଏହାକୁ ଗୁପ୍ତ ରଖିବା ପାଇଁ ଏବଂ କର୍ତ୍ତୃପକ୍ଷଙ୍କ ବିନା ଅନୁମତିରେ ଗବେଷଣା ବିଷୟରେ କାହାକୁ ନ କହିବା ପାଇଁ । ଫାର୍ମ ଏହି ଗବେଷଣାରୁ ପ୍ରଚୁର ଅର୍ଥ

ଉପାର୍ଜନ କଲା । ସହକର୍ମୀ ଦୁଇଜଣ ବଦଳି ହୋଇ ଅନ୍ୟତ୍ର ଚାଲିଗଲେ । ରାମାୟାଙ୍କ ଗବେଷଣାଗାର ମାନ୍ଦା ପଡ଼ିଗଲା ।

ରାମାୟା ମାର୍କ୍ସବାଦକୁ ସମର୍ଥନ କରୁଥିଲେ ମଧ୍ୟ ନିଜେ ଜଣେ ମାନବବାଦୀ ବୋଲି ଗର୍ବ ଅନୁଭବ କରୁଥିଲେ । ତାଙ୍କର ଚୁକ୍ତି ସରିଲାପରେ ତାଙ୍କୁ ପଦୋନ୍ନତି ମିଳିଲା । ସେ ଧନ୍ୟବାଦ ଦେଇ ରୁଷିଆରୁ ଚାଲିଆସିଲେ । ସିଣ୍ଡି ତାଙ୍କ ସହିତ ଫେରିବାକୁ ମନାକଲେ । ରାମାୟାଙ୍କୁ ଅଟକାଇ ପାରିଲେ ନାହିଁ । ନିୟୁୟର୍କ ଫେରି ରାମାୟା ଶୁଣିଲେ ଜୋ'ଙ୍କର ମୃତ୍ୟୁ ହୋଇଯାଇଛି ।

ଯୁଦ୍ଧ ସମୟରେ ଯେଉଁ ଟ୍ୟାଙ୍କ ବ୍ୟବହାର କରାଯାଉଥିଲା, ସେଥିରେ ରାମାୟାଙ୍କ ଦ୍ୱାରା ପ୍ରସ୍ତୁତ ତ୍ରୁଟିହୀନ, ନିର୍ଭରଯୋଗ୍ୟ, ଯୁଦ୍ଧକ୍ଷେତ୍ରରେ ବ୍ୟବହାରଯୋଗ୍ୟ ପିଚ୍ଛିଳୀକାରକ ପଦାର୍ଥ ଓ ଇନ୍ଧନ ବ୍ୟବହାର କରାଗଲା । ୧୯୫୧ ମସିହାରେ ପିଚ୍ଛିଳୀକାରକ ପଦାର୍ଥର ବହଳତା ଦୋଷ ଏବଂ ଘର୍ଷଣ ଉପରେ ତାର ପ୍ରଭାବ ଉପରେ ଗବେଷଣା କରି ରାମାୟା ଡକ୍ଟରେଟ୍ ଉପାଧିରେ ଭୂଷିତ ହେଲେ । ସେ ଭାରତୀୟ ହୋଇଥିବାରୁ ସୋଭିଏଟ୍‌ରେ ସ୍ୱୀକୃତି ପାଇନଥିଲେ । ବିଜ୍ଞାନ ଜଗତକୁ ତାଙ୍କ ଅବଦାନ ପାଇଁ ସେ ''ନାମି ଡିପାର୍ଟମେଣ୍ଟ ଅଫ୍ ଫୁଏଲ୍ ଏଣ୍ଡ ଅଏଲ୍''ରୁ ବିଭାଗୀୟ ମୁଖ୍ୟ ଭାବରେ ଅବସର ନେଲେ । ବୈଜ୍ଞାନିକ ଅନ୍ୱେଷଣ ସହ ସେ ସାହିତ୍ୟ କ୍ଷେତ୍ରରେ ମସ୍କୋରେ ନାଁ କମାଇ ଥିଲେ । ସେ ଅନେକ ପୁସ୍ତକ ତେଲଗୁ ଭାଷାରେ ଅନୁବାଦ କରିଥିଲେ । ୧୯୫୦ ମସିହାରେ ନିଜ ଘରକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ତାଙ୍କୁ ଅନେକ ଭାରତୀୟ, ବୈଜ୍ଞାନିକ, କଳାକାର, ଲେଖକ, ଛାତ୍ର ଏବଂ ବୁଦ୍ଧିଜୀବୀ ପ୍ରବର୍ତ୍ତାଇଥିଲେ । ତାଙ୍କୁ 'ରୁଷିଆ ଆନ୍ଧ୍ର', 'ମସ୍କୋ ଆନ୍ଧ୍ର', 'ସୋଭିଏଟ୍ ଆନ୍ଧ୍ର' ବୋଲି କୁହାଯାଉଥିଲା । ତାଙ୍କର ମୁଖ୍ୟ ଗବେଷଣା ମୋଟର ଅଏଲର ଗୁଣ ଏବଂ ମିଶ୍ରିତ ପଦାର୍ଥର କାର୍ଯ୍ୟ କ୍ଷମତା ଉପରେ ପର୍ଯ୍ୟବସିତ ଥିଲା । ଇନ୍ଦର ଗୁଜରାଲ ତାଙ୍କ ଅନ୍ତ୍ୟେଷ୍ଟିକ୍ରିୟାରେ କହିଥିଲେ, ''ଆମେ ଜଣେ ଶ୍ରେଷ୍ଠ ବୈଜ୍ଞାନିକ, ଭାରତର ବରପୁତ୍ର, ମଣିଷ ଜାତିର ସୁପୁତ୍ରକୁ ବିଦାୟ ଦେଉଛୁ ।''



# କେ.ଏଲ୍. ରାଓ

**ଇଂ ମାୟାଧର ସ୍ୱାଇଁ**

ଡକ୍ଟର କାନୁରି ଲକ୍ଷ୍ମଣ ରାଓ ହେଉଛନ୍ତି ଭାରତର ଜଣେ ପ୍ରସିଦ୍ଧ ଜଳସେଚନ ଇଞ୍ଜିନିୟର । ଭାରତର ଅନେକ ନଦୀବନ୍ଧ ନିର୍ମାଣରେ ତାଙ୍କର ପ୍ରମୁଖ ଭୂମିକା ରହିଛି ।

ଲକ୍ଷ୍ମଣ ରାଓ ଆନ୍ଧ୍ର ପ୍ରଦେଶର କୃଷ୍ଣା ଜିଲ୍ଲାର କାଙ୍କିପାଡୁ ଗ୍ରାମରେ ୧୯୦୨ ମସିହା ଜୁଲାଇ ମାସ ୧୫ ତାରିଖରେ ଗୋଟିଏ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ନଅବର୍ଷ ବୟସରେ ସେ ପିତାଙ୍କୁ ହରାଇଥିଲେ । ପିଲାଦିନେ ସ୍କୁଲରେ ଖେଳୁଥିବାବେଳେ ଗୋଟିଏ ଦୁର୍ଘଟଣାରେ ସେ ଗୋଟିଏ ଆଖି ହରାଇ ଥିଲେ । ଏହା ସତ୍ତ୍ୱେ ସେ ସ୍କୁଲରେ ଭଲ ପଢୁଥିଲେ । ସେ ଚେନାଇର ପ୍ରେସିଡ଼େନ୍ସି କଲେଜରେ ଆଇ.ଏସସି. ଅଧ୍ୟୟନ ପରେ ମାଦ୍ରାଜ ବିଶ୍ୱବିଦ୍ୟାଳୟରୁ ଇଞ୍ଜିନିୟରିଂ ଡିଗ୍ରୀ ହାସଲ କଲେ । ମାଦ୍ରାଜ ବିଶ୍ୱବିଦ୍ୟାଳୟରୁ ଇଞ୍ଜିନିୟରିଂରେ ସ୍ନାତକୋତ୍ତର ଡିଗ୍ରୀ ପାଇବାରେ ସେ ଥିଲେ ପ୍ରଥମ ବ୍ୟକ୍ତି । ସେ ପରେ ଇଂଲଣ୍ଡର ବର୍ମିଙ୍ଗହାମ୍ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି. ଡିଗ୍ରୀ ହାସଲ କରିଥିଲେ ।

ଅଧ୍ୟୟନ ପରେ ଲକ୍ଷ୍ମଣ ରାଓ ରେଙ୍ଗୁନରେ (ଏବର ୟାଂଗୋ) ପ୍ରଫେସରଭାବେ ଚାକିରି ଜୀବନ ଆରମ୍ଭ କଲେ । ସେଠାରୁ ସେ ପିଏଚ୍.ଡ଼ି. କରିବା ପାଇଁ ଇଂଲଣ୍ଡ ଗଲେ । ପିଏଚ୍.ଡ଼ି. ପରେ ସେ ଇଂଲଣ୍ଡରେ ଅଧ୍ୟାପନା କଲେ । ଭାରତ ପ୍ରତ୍ୟାବର୍ତ୍ତନ ପରେ ସେ ମାଦ୍ରାଜ ସରକାରଙ୍କ ଅଧୀନରେ ଡିଜାଇନ୍ ଇଞ୍ଜିନିୟର ଭାବେ କାମ କଲେ । ସେ ୧୯୫୦ ମସିହାରେ ନୂଆଦିଲ୍ଲୀରେ ବିଦ୍ୟୁତ୍ ଆୟୋଗର ଡିଜାଇନ୍ ବିଭାଗର ନିର୍ଦ୍ଦେଶକ ଭାବେ ଯୋଗ ଦେଲେ । ସେ ୧୯୫୪ ମସିହାରେ ମୁଖ୍ୟଯନ୍ତ୍ରୀ ପଦକୁ ପଦୋନ୍ନତି ପାଇଥିଲେ ।

ରାଓଙ୍କ ମୁଖ୍ୟ କୃତି ହେଉଛି ଦେଶରେ ନିର୍ମିତ ବିଭିନ୍ନ ନଦୀବନ୍ଧ । ଦେଶ ସ୍ୱାଧୀନତା ଲାଭ କଲା ପରେ ଦେଶରେ ଅନେକଗୁଡ଼ିଏ ବୃହତ୍ ନଦୀ ପ୍ରକଳ୍ପର ପରିକଳ୍ପନା କରାଗଲା । ଏଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜଳସେଚନ, ବନ୍ୟା ନିୟନ୍ତ୍ରଣ ଓ ବିଦ୍ୟୁତ୍ ଉତ୍ପାଦନ । ପ୍ରଥମେ ନଦୀବନ୍ଧଗୁଡ଼ିକର ଡିଜାଇନ୍ ବିଦେଶୀ ଇଞ୍ଜିନିୟରମାନଙ୍କ ଦ୍ୱାରା କରାଯାଉଥିଲା । ରାଓଙ୍କ ଉଦ୍ୟମ ବଳରେ କ୍ରମେ ଭାରତୀୟ ଇଞ୍ଜିନିୟରମାନେ ନିଜସ୍ୱ ଜ୍ଞାନବଳରେ ନଦୀବନ୍ଧ ଡିଜାଇନ୍ କଲେ । ରାଓ ନିଜେ ବନ୍ଧ ଡିଜାଇନ୍ ପାଇଁ କେତୋଟି ନୂତନ ତତ୍ତ୍ୱ ଆବିଷ୍କାର କରି ତାକୁ ସଫଳ ଭାବେ ପ୍ରୟୋଗ କଲେ । ରାଓ ୧୯୫୦ ମସିହାରେ ଦିଲ୍ଲୀକୁ ବଦଳି ହେଲେ । ସେତେବେଳକୁ ଯୁକ୍ତରାଷ୍ଟ୍ର ଆମେରିକାର ଇଞ୍ଜିନିୟରମାନଙ୍କ ଦ୍ୱାରା ହୀରାକୁଦ ବନ୍ଧର ଡିଜାଇନ୍ କରାଯାଉଥିଲା । ମାତ୍ର ରାଓ ଅତି ଶୀଘ୍ର ଡିଜାଇନ୍‌ର ଦାୟିତ୍ୱ ନିଜ ହାତକୁ ନେଲେ ଏବଂ ଆମେରିକାର ଇଞ୍ଜିନିୟରମାନେ ସ୍ୱଦେଶକୁ ଚାଲିଗଲେ ।

ରାଓଙ୍କ ଉଦ୍ୟମ ଫଳରେ ସବୁପ୍ରକାର ନଦୀବନ୍ଧ ଯଥା, କଂକ୍ରିଟ ବନ୍ଧ, ପଥର ବନ୍ଧ, ମାଟି ବନ୍ଧ, ଆର୍କ ବନ୍ଧ ଏବଂ ଭୂମିତଳ ବିଦ୍ୟୁତ୍ କେନ୍ଦ୍ର ଆଦିର ଡିଜାଇନ୍ ଭାରତୀୟ ଇଞ୍ଜିନିୟରମାନେ କଲେ । ସେ ଡିଜାଇନ୍ ଆୟୋଗର ନିର୍ଦ୍ଦେଶକଭାବେ ଏସବୁର ଦାୟିତ୍ୱ ନେଇ ନିଜେ ରାତ୍ରିର ଅନେକ ସମୟ ପର୍ଯ୍ୟନ୍ତ କାର୍ଯ୍ୟାଳୟରେ ରହି କାର୍ଯ୍ୟ କରୁଥିଲେ । ଏଠାରେ ସୂଚନାଯୋଗ୍ୟ ଯେ ସେତେବେଳେ କାଲକୁଲେଟର କିମ୍ବା କମ୍ପ୍ୟୁଟର ନଥିଲା । ସବୁ ଡିଜାଇନ୍ କାଗଜ କଲମରେ କରିବାକୁ ପଡୁଥିଲା । ରାଓ ସଂଶ୍ଳିଷ୍ଟଥିବା ବନ୍ଧଗୁଡ଼ିକ ମଧ୍ୟରୁ ଚମ୍ବଲ ବନ୍ଧ, ମହାନଦୀରେ ହୀରାକୁଦ ବନ୍ଧ, ଗଙ୍ଗାର ଫାରକା ବନ୍ଧ, କୋଶିବନ୍ଧ, ମେଘାଳୟର ଉନିଆମ୍ ବନ୍ଧ, କର୍ଣ୍ଣାଟକର ସରାବତୀ ବନ୍ଧ, ତାପୀ ନଦୀର ଉକାଇ ବନ୍ଧ ଏବଂ କୃଷ୍ଣା ନଦୀର ଶ୍ରୀସାଲିମ୍ ଓ ନାଗାର୍ଜୁନ ସାଗର ବନ୍ଧ ଅନ୍ୟତମ । ନଦୀବନ୍ଧ ଡିଜାଇନ୍‌ରେ ଭାରତୀୟ ଇଞ୍ଜିନିୟରମାନଙ୍କର ଅଭିଜ୍ଞତା ଓ ଦକ୍ଷତାକୁ ବ୍ୟାବସାୟିକ ଦିଗରେ ବିନିଯୋଗ କରିବା ପାଇଁ ତାଙ୍କ ଉଦ୍ୟମରେ କେନ୍ଦ୍ର ସରକାର 'ଜଳ ଓ ଶକ୍ତି ଉପଦେଷ୍ଟା ସେବା' (Water and Energy Consultancy Services) ସ୍ଥାପନ କରିଥିଲେ । ଏହା ମାଧ୍ୟମରେ ସେ ବିଦେଶର କେତେକ ନଦୀବନ୍ଧର ଡିଜାଇନ୍ କରିଥିଲେ ।

ଲକ୍ଷ୍ମଣ ରାଓ ଦେଶର ଜଳସେଚନ ଓ ବନ୍ୟା ନିୟନ୍ତ୍ରଣ ସମସ୍ୟା ଉପରେ ଗବେଷଣା କରି ଏହାର ନିରାକରଣ ପାଇଁ 'ନଦୀ ସଂଯୋଗ' (Interlinking rivers) ପ୍ରସ୍ତାବ ଦେଇଥିଲେ । ତାଙ୍କ ପ୍ରସ୍ତାବ ଅନୁଯାୟୀ ଉତ୍ତର ଭାରତର ନଦୀ ବ୍ରହ୍ମପୁତ୍ର ଓ ଗଙ୍ଗାକୁ ଦକ୍ଷିଣ ଭାରତର ନଦୀ କୃଷ୍ଣା, ଗୋଦାବରୀ ଓ କାବେରୀ ସହିତ କେନାଲ ଦ୍ୱାରା ସଂଯୋଗ

କରାଯାଇପାରିବ । ଏହାଦ୍ୱାରା ଉତ୍ତରଭାରତୀୟ ନଦୀର ବଳକା ଜଳକୁ ଦକ୍ଷିଣ ଭାରତରେ ବିନିଯୋଗ କରାଯାଇପାରିବ । ଫଳରେ ଦେଶରେ ଜଳସେଚନ, ବିଦ୍ୟୁତ୍ ଉତ୍ପାଦନ, ବନ୍ୟା ନିୟନ୍ତ୍ରଣ ଏବଂ ନୌଯାତ୍ରା ଆଦିର ଯଥେଷ୍ଟ ଉନ୍ନତି ହୋଇପାରିବ । ପୁନଶ୍ଚ ଏହା ଅନେକ ଲୋକଙ୍କୁ ରୋଜଗାରର ସୁବିଧା ମଧ୍ୟ ଦେବ । ୧୯୫୦ ଦଶକରେ ରାଓଙ୍କ ପ୍ରଦତ୍ତ ଏହି ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ତାଙ୍କ ପ୍ରଦତ୍ତ ବିଶଦ ବିବରଣୀ ଫାଇଲ୍ ଭିତରେ ରହିଗଲା । ଏହାକୁ କାର୍ଯ୍ୟକାରୀ କରିବାରେ ମୁଖ୍ୟ ଅସୁବିଧା ଥିଲା ଯେ, ଏଥିରେ ଅନେକ ଅର୍ଥ ଖର୍ଚ୍ଚ ହେବ । ବିଶେଷକରି ବିନ୍ଧ୍ୟ ପର୍ବତ ଶ୍ରେଣୀ ଅତିକ୍ରମ କରିବା ପାଇଁ କେନାଲ ଖନନ ଅତ୍ୟନ୍ତ ବ୍ୟୟବହୁଳ ହେବ । ସେ ପରେ ମତ ଦେଇଥିଲେ ଯେ ବିନ୍ଧ୍ୟ ପର୍ବତମାଳାକୁ ଏଡ଼ାଇ ଗଙ୍ଗା ଓ ବ୍ରହ୍ମପୁତ୍ରର ଜଳକୁ ମହାନଦୀ ଓ ସୁବର୍ଣ୍ଣରେଖା ନଦୀରେ ପକାଇ ସେଠାରୁ ଦକ୍ଷିଣ ଭାରତକୁ ନେଇ ହେବ । ରାଓଙ୍କ ନଦୀ ସଂଯୋଗ ପ୍ରସ୍ତାବ ବହୁତ ବର୍ଷ ପର୍ଯ୍ୟନ୍ତ ବନ୍ଦ ହୋଇ ରହିବା ପରେ ଏହି ଶତାବ୍ଦୀର ଆରମ୍ଭରେ ଇଞ୍ଜିନିୟର ଓ ନେତାମାନେ ପୁଣି ଏହା ଉପରେ ତର୍କବିତର୍କ କରିଛନ୍ତି ।

ଲକ୍ଷ୍ମଣ ରାଓ ୧୯୬୧ ମସିହାରେ ଆନ୍ଧ୍ରପ୍ରଦେଶର ବିଜୟୱାଡ଼ା ନିର୍ବାଚନ ମଣ୍ଡଳୀରୁ ପ୍ରଥମ ଥର ପାଇଁ ଲୋକସଭାକୁ ନିର୍ବାଚିତ ହେଲେ । ସେ ସେଠାରୁ ତିନିଥର ଲୋକସଭାକୁ ନିର୍ବାଚିତ ହୋଇଥିଲେ । ସେ ୧୯୬୩ ମସିହା ଜୁଲାଇ ମାସ ୨୦ ତାରିଖରେ କେନ୍ଦ୍ର ସରକାରରେ ଜଳସେଚନ ଓ ବିଦ୍ୟୁତ୍ ମନ୍ତ୍ରୀ ଭାବେ ଶପଥ ନେଲେ । ତାଙ୍କ ମନ୍ତ୍ରୀତ୍ୱ ସମୟରେ ସେ ଅନେକ ଜଳସେଚନ ଓ ଜଳବିଦ୍ୟୁତ୍ ପ୍ରକଳ୍ପ କାର୍ଯ୍ୟକାରୀ କରାଇ ଥିଲେ । ଏପରିକି ସେ ନିଜେ ମଧ୍ୟ କେତେକର ଡିଜାଇନ୍ କରିଥିଲେ । ସେ ଜବାହରଲାଲ ନେହରୁ, ଲାଲବାହାଦୁର ଶାସ୍ତ୍ରୀ ଓ ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳର ସଦସ୍ୟ ଥିଲେ । ସେ ମନ୍ତ୍ରୀ ଥିବା ସମୟରେ ନର୍ମଦା ନଦୀର ସର୍ଦ୍ଦାର ସରୋବର ପ୍ରକଳ୍ପ ପାଇଁ ବିଭିନ୍ନ ରାଜ୍ୟ ମଧ୍ୟରେ ଥିବା ବାଦ ବିବାଦର ସମାଧାନ କରିଥିଲେ ।

ଜଳସେଚନ ଓ ଶକ୍ତି କ୍ଷେତ୍ରରେ ରାଓଙ୍କ ଅବଦାନକୁ ସମ୍ମାନ ଜଣାଇ ଭାରତ ସରକାର ତାଙ୍କୁ ୧୯୬୩ ମସିହାରେ ପଦ୍ମଭୂଷଣ ସମ୍ମାନରେ ସମ୍ମାନିତ କରିଥିଲେ । ତାଙ୍କୁ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ୧୯୬୦ ମସିହାରେ ଏବଂ ରୁର୍କି ବିଶ୍ୱବିଦ୍ୟାଳୟ ୧୯୬୮ ମସିହାରେ ସମ୍ମାନଜନକ ଡକ୍ଟରେଟ୍ ଉପାଧି ପ୍ରଦାନ କରିଥିଲେ । ସେ ୧୯୬୦ ମସିହାରେ କେନ୍ଦ୍ରୀୟ ଜଳସେଚନ ପରିଷଦର ସଭାପତି ଥିଲେ । ସେ ୧୯୫୮ ମସିହାରୁ ୧୯୬୦ ମସିହା ପର୍ଯ୍ୟନ୍ତ ସର୍ବଭାରତୀୟ ଇଞ୍ଜିନିୟର ସଂଘର ସଭାପତି ଥିଲେ । ତାଙ୍କ ଜନ୍ମ

ଶତବାର୍ଷିକୀରେ ହାଇଦ୍ରାବାଦରେ ତାଙ୍କର ଏକ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି । ଆନ୍ଧ୍ର ପ୍ରଦେଶ ସରକାର ୨୦୦୬ ମସିହାରେ ଗୁଣ୍ଟୁର ଜିଲ୍ଲାର ପୁଲିଚିନ୍ତାଲା ପ୍ରକଳ୍ପର ନାମ କେ.ଏଲ୍. ରାଓ ସାଗର ପ୍ରକଳ୍ପ ରଖିଛନ୍ତି ।

ଲକ୍ଷ୍ମଣ ରାଓ କେତୋଟି ବୈଷୟିକ ପ୍ରବନ୍ଧ ପ୍ରକାଶ କରିବା ସହ ପାଞ୍ଚୋଟି ଉଚ୍ଚକୋଟୀର ପୁସ୍ତକ ରଚନା କରିଛନ୍ତି । ପୁସ୍ତକଗୁଡ଼ିକ ନଦୀବନ୍ଧ, ଜଳସେଚନ ଓ ସିଭିଲ୍ ଇଞ୍ଜିନିୟରିଂ ସମ୍ପର୍କୀୟ ପାଠ୍ୟ ପୁସ୍ତକ । ଏଗୁଡ଼ିକ ହେଉଛି :

1. Structural Engineering and Reinforced Concrete (1939)
2. Calculation, Design and Testing of Reinforced Concrete (1962)
3. Rivers and Their Development (1964)
4. India's Water Wealth (1975)
5. Cusecs Candidate (1978)

ଡଃ ରାଓ ୧୯୮୬ ମସିହା ମେ ମାସ ୧୮ ତାରିଖରେ ଇହଲୀଳା ସମ୍ବରଣ କଲେ ।



# ବିଷ୍ଣୁପଦ ମୁଖାର୍ଜି

**ସ୍ୱର୍ଗତ ଲକ୍ଷ୍ମୀନାରାୟଣ ନନ୍ଦ**

ଇଷ୍ଟ ଇଣ୍ଡିଆ କମ୍ପାନୀ ଆମ ଦେଶକୁ ଶାସନ କଲାବେଳେ ଇଉରୋପରୁ ଆମପାଇଁ ଓ ଏଠାରେ ଥିବା ବିଦେଶୀ ଲୋକଙ୍କ ପାଇଁ ଔଷଧପତ୍ର ଆଣୁଥିଲେ । ଆମ ଦେଶରେ ପ୍ରାଚୀନ ପଦ୍ଧତିରେ ଗଛ, ଲତା, ଫଳ, ମୂଳ, ଜୀବଜନ୍ତୁ ଓ ନାନାଦି ଧାତବ ପଦାର୍ଥରୁ ପ୍ରସ୍ତୁତ ଔଷଧପତ୍ର ବ୍ୟବହୃତ ହେଉଥିଲା ଓ ବର୍ତ୍ତମାନ ସୁଦ୍ଧା ହୋଇ ଆସୁଛି । ମନୁଷ୍ୟ ଓ ତାର ସ୍ୱାସ୍ଥ୍ୟ ପାଇଁ ଔଷଧର ଚାହିଦା ସଦାବେଳେ ଥିଲା । ତେଣୁ ପ୍ରତି ଦେଶରେ ସେଠିକାର ଜଳବାୟୁ, ମିଳୁଥିବା ପଦାର୍ଥ, ସେଗୁଡ଼ିକର ଉପଯୁକ୍ତ ବ୍ୟବହାର ଓ ଲୋକଙ୍କର ଆର୍ଥିକ ସମ୍ବଳ ଔଷଧପତ୍ର ବ୍ୟବହାର ଉପରେ ବହୁତ ପ୍ରଭାବ ପକାଉଥିଲା । ପର୍ଯ୍ୟଟକମାନଙ୍କ ଦ୍ୱାରା, ବାଣିଜ୍ୟ ବସତି ଦ୍ୱାରା ଓ ଶାସନଗୋଷ୍ଠୀ ଦ୍ୱାରା ଅନ୍ୟାନ୍ୟ ଦେଶରେ ବ୍ୟବହୃତ ହେଉଥିବା ଔଷଧପତ୍ର ଆମ ଦେଶକୁ ଆସିଲା । ଯେଉଁ ଔଷଧରୁ ଲୋକେ ଉପକାର ପାଇଲେ ତାକୁ ଆମ ଦେଶପାଇଁ ଗ୍ରହଣ କରିନେଲେ ।

ଗାଁଗହଳରେ ଏବେ ବି ଅଛି ଆଗେ ବି ଥିଲା । ଗରିବ ଲୋକେ, ଯେଉଁମାନେ ଆର୍ଥିକ ସମ୍ବଳ ଯୋଗାଡ଼ କରିପାରନ୍ତି ନାହିଁ, ସେମାନେ ତାଙ୍କର ଚତୁଃପାର୍ଶ୍ୱରେ ମିଳୁଥିବା ଗୁଳ୍ମ, ଗଛ, ଲତା ଓ ଅନ୍ୟାନ୍ୟ ଜିନିଷପତ୍ରରୁ ସେମାନଙ୍କର ଔଷଧ ଯୋଗାଡ଼ କରିଥାନ୍ତି । ତେଣୁ ପ୍ରାୟ ବିନା ପଇସାରେ ସେମାନେ ଚିକିତ୍ସିତ ହୁଅନ୍ତି । ଗ୍ରାମର ବୈଦ୍ୟ ଓ ଯେଉଁମାନଙ୍କ ନିର୍ଦ୍ଦେଶରେ ସେମାନେ ଔଷଧ ବ୍ୟବହାର କରନ୍ତି ସେମାନଙ୍କୁ ପାରିଶ୍ରମିକ ଟଙ୍କା ପଇସା ଆକାରରେ ଦେବାକୁ ପଡ଼େ ନାହିଁ । ଲୋକେ ସୁସ୍ଥ ହୁଅନ୍ତି, ଚଳନ୍ତି ଓ ଜୀବିକା ନିର୍ବାହ କରନ୍ତି ।

ସଭ୍ୟତା ସହିତ ତାଳଦେଇ ଯେତେବେଳେ ମାନବ ସମାଜକୁ ଚାଲିବାକୁ ହେଲା ସେତେବେଳେ ସେ ତା'ର ବିକାଶ ପାଇଁ ଓ ସୁସ୍ଥତା ପାଇଁ ଔଷଧପତ୍ରର ଚାହିଦା ମଧ୍ୟ

ବଢ଼ାଇଲା । ବୈଜ୍ଞାନିକ ପ୍ରଣାଳୀପ୍ରସ୍ତୁତ ଔଷଧପତ୍ର ପ୍ରତି ଆଦର ହେଲା ଓ ବ୍ୟାବସାୟିକ ବୁଦ୍ଧି ଖଟାଇ ଯେଉଁମାନେ ଏହାକୁ ପରିବେଷଣ କରିପାରିଲେ ସେମାନେ ମଧ୍ୟ ଉତ୍ତମ ରୋଜଗାର କରୁଥିଲେ । ତେଣୁ ଧୀରେ ଧୀରେ ସଭ୍ୟତା ସହିତ ତାଳଦେଇ ସମାଜ ଚାଲିଲାପରେ ଚିକିତ୍ସକଠାରୁ ଔଷଧପତ୍ରର ପ୍ରସ୍ତୁତି ଚାଲିଯାଇ ଅନ୍ୟ ଗୋଟିଏ ଗୋଷ୍ଠୀ ଉପରେ ତାହା ରହିଲା । ଯେଉଁ ଚିକିତ୍ସକ ତା'ର ନିଜ ରୋଗୀ ପାଇଁ ଔଷଧପତ୍ର ପ୍ରସ୍ତୁତ କରୁଥିଲେ, ବା ନିଜ ତତ୍ତ୍ୱାବଧାନରେ ରଖୁଥିଲେ, ତାହା ପ୍ରାୟ ଲୋପ ପାଇଗଲା । ଚିକିତ୍ସକମାନେ କେବଳ ରୋଗ ନିର୍ଣ୍ଣୟ ଓ ରୋଗୀପାଇଁ ବ୍ୟବସ୍ଥାପତ୍ରର ଦାୟିତ୍ୱ ନେଲେ । ନିଜେ ଔଷଧପତ୍ର ଦାୟିତ୍ୱ ନେଇଥିଲାବେଳେ ତାର ମାନ ବଜାୟ ରଖୁଥିଲେ । ଯେତେବେଳେ ତାହା ନିଜ ହାତରୁ ଯାଇ ଅନ୍ୟମାନଙ୍କ ହାତରେ ବିଭିନ୍ନ ଉପାୟରେ ରହିଲା ସେତେବେଳେ ଔଷଧର ଗୁଣାତ୍ମକ ମାନ ନରହିଲେ କାହାକୁ ଦାୟୀ କରିବା ଦରକାର ପଡ଼ିଲା ।

ଏଇସବୁ ଉପରୋକ୍ତ ବିଷୟ ଯଥା, ଔଷଧର ଗୁଣାତ୍ମକ ମାନ ରକ୍ଷା, ଉତ୍ତମ ପରିବେଷଣ, ଔଷଧ କିଣି ବ୍ୟବହାର କରିବାର ଆର୍ଥିକ କ୍ଷମତା ଓ ସର୍ବୋପରି ଔଷଧ ପ୍ରସ୍ତୁତିକରଣରେ ସ୍ୱାବଲମ୍ୱନ ହେବା, ଗବେଷଣା କରିବା ଇତ୍ୟାଦି ବିଷୟରେ ବିଂଶ ଶତାବ୍ଦୀର ୪ର୍ଥ ଦଶନ୍ଧିଠାରୁ ଆରମ୍ଭ କରି ସପ୍ତମ ଦଶନ୍ଧି ପର୍ଯ୍ୟନ୍ତ ଡାକ୍ତର ବିଷ୍ଣୁପଦ ମୁଖାର୍ଜି ନିଜକୁ ନିୟୋଜିତ କରିଥିଲେ ।

ଡାକ୍ତର ମୁଖାର୍ଜି କଲିକତାସ୍ଥିତ ବାରୋକପୁରରେ ୧୯୦୩ ଖ୍ରୀଷ୍ଟାବ୍ଦରେ ଗୋଟିଏ ରକ୍ଷଣଶୀଳ ପରିବାରରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନୁ ତାଙ୍କର ଡାକ୍ତରୀ ପଢ଼ିବା, ଘରର ଆତ୍ମୀୟ ସ୍ୱଜନମାନଙ୍କୁ ସେମାନଙ୍କ ରୋଗବିରାଗ ସମୟରେ ଔଷଧପତ୍ର ଆଣି ଦେବା ବିଷୟ ସେ ନିଜେ ତଦାରଖ କରିବାକୁ ଭଲ ପାଉଥିଲେ । ତାଙ୍କର ପିଲାଦିନର କଥା । କଲିକତାରେ ସମସ୍ତ ପ୍ରକାର ବିଦେଶୀୟ ଔଷଧ ମିଳୁଥିଲା । ତା'ପରେ ସେଠାରେ ମଧ୍ୟ କେତୋଟି ଔଷଧ କାରଖାନା ଆରମ୍ଭ ହେଉଥିଲା । କବିରାଜି ଔଷଧ ପାଇଁ ଦୋକାନ ଛଡ଼ା କାରଖାନା ମଧ ଥିଲା । ସେ ପିଲାଦିନୁ ଏ ସବୁ ବିଷୟ ଜାଣିବା, ଖବର ରଖିବା, କାରଖାନା ବୁଲିକରି ଦେଖିବା, କବିରାଜମାନଙ୍କର ଔଷଧ ପ୍ରସ୍ତୁତିପଦ୍ଧତି ଇତ୍ୟାଦି ବଡ଼ ଶ୍ରଦ୍ଧାର ସହିତ ନିରୀକ୍ଷଣ କରୁଥିଲେ । ସେ ୧୯୨୭ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଡାକ୍ତରୀ ପରୀକ୍ଷାରେ ପ୍ରଥମ ହୋଇ ସ୍ତ୍ରୀ ରୋଗ ଶାଖାରେ ଅନର୍ସପାଇ ଡାକ୍ତର ହୋଇ ବାହାରିଲେ । ଏହାପୂର୍ବରୁ ମଧ ସେ ଫାର୍ମାକୋଲଜିରେ ଅନର୍ସ ପାଇଥିଲେ । ପୂରା

ଡାକ୍ତର ହୋଇ ବାହାରିଲା ପରେ ସେ ଜଣେ ସ୍ତ୍ରୀ ରୋଗ ବିଶେଷଜ୍ଞ ହେବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ ଓ ସୁଯୋଗ ମଧ୍ୟ ପାଇଥିଲେ । କିନ୍ତୁ ଯେତେବେଳେ ସେ ଟ୍ରପିକାଲ ସ୍କୁଲ ଓ ମେଡ଼ିସିନ୍‌ର ଡାଇରେକ୍ଟର କର୍ଣ୍ଣେଲ ରାମନାଥ ଚୋପ୍ରାଙ୍କ ସଂସ୍ପର୍ଶରେ ଆସିଲେ ସେତେବେଳେ ତାଙ୍କର ଭାଗ୍ୟ ବଦଳିଗଲା । କର୍ଣ୍ଣେଲ ଚୋପ୍ରା ଭାରତୀୟ ଗୁଳ୍ମ, ଲତା, ଗଛରୁ ଦ୍ରବ୍ୟଗୁଣ ସଂଗ୍ରହ କରି ତାହା ଆଧୁନିକ ବୈଜ୍ଞାନିକ ପ୍ରଣାଳୀରେ ଔଷଧ ରୂପେ ପ୍ରୟୋଗ କରୁଥିଲେ । ଏଥିପାଇଁ ତାଙ୍କର ବହୁତ ଖ୍ୟାତିଥିଲା ଓ ବର୍ତ୍ତମାନ ସୁଦ୍ଧା ସେ କରିଯାଇଥିବା କାର୍ଯ୍ୟ ସମସ୍ତଙ୍କର ଅଧ୍ୟୟନର ବିଷୟ । ଡାକ୍ତର ମୁଖାର୍ଜି କର୍ଣ୍ଣେଲ ଚୋପ୍ରାଙ୍କ ସଂସ୍ପର୍ଶରେ ଆସିଲା ପରେ ତାଙ୍କର ଜୀବନର ଦିଗ ଓ ଦର୍ଶନ ବଦଳିଗଲା । ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ସେ ଔଷଧର ଗୁଣ, ମାନ ଓ ପ୍ରୟୋଗରେ ନିଜକୁ ନିୟୋଜିତ କରିଥିଲେ ।

ଆମ ଦେଶରେ ମିଳୁଥିବା ଔଷଧପତ୍ର ବିଷୟରେ ତାଙ୍କର ଜ୍ଞାନ ଆହରଣର ଯେଉଁ ତୃଷ୍ଣା ଥିଲା ତାହା ଫଳରେ ତାଙ୍କୁ ୧୯୩୩ ମସିହାରେ ପ୍ରସିଦ୍ଧ ରକଫେଲର ଫାଉଣ୍ଡେସନ ବୃତ୍ତି ପାଇ ଚାଇନା, ୟୁରୋପର ବିଭିନ୍ନ ଦେଶ ଓ ସର୍ବଶେଷରେ ଆମେରିକାରେ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । ବିଦେଶକୁ ଯିବା ପୂର୍ବରୁ ସେ ଆମ ଭାରତରେ ଔଷଧ ବିଷୟରେ ସମସ୍ତ ଦିଗରୁ ଅନୁସନ୍ଧାନ କରିବାକୁ ଥିବା କମିଟିର ସହାୟକ ସେକ୍ରେଟେରୀ ଭାବେ କାର୍ଯ୍ୟ କରୁଥିଲେ ଓ କର୍ଣ୍ଣେଲ ଚ୍ରୋପା ତା'ର ସଭାପତି ଥିଲେ । ୧୯୩୬ ମସିହାରେ ଡାକ୍ତର ମୁଖାର୍ଜି ଆମେରିକାର ମିଚିଗାନ ବିଶ୍ୱବିଦ୍ୟାଳୟରୁ ଡି.ଏସ୍‌ସି. ଡିଗ୍ରୀ ନେଇ ଭାରତକୁ ଫେରିଆସିଥିଲେ ।

ସେ ଔଷଧ ଅନୁସନ୍ଧାନ କମିଟିର ସେକ୍ରେଟେରୀ ଥିଲାବେଳେ ଆମ ଦେଶର ବିଭିନ୍ନ ପ୍ରଦେଶରେ ହେଉଥିବା ଔଷଧପତ୍ରର ବ୍ୟବହାର, ପରିବେଷଣ, ମାନ ନିର୍ଣ୍ଣୟ ଓ ଉପଯୋଗ ବିଷୟରେ ଅନୁଧ୍ୟାନ କରିବାକୁ ଚାରିଆଡ଼େ ବୁଲିଥିଲେ । ବିଶେଷ କରି ସେ ଔଷଧର ମାନ, ପରିବେଷଣ, ଉତ୍ପାଦନ ଓ ପ୍ରସ୍ତୁତକାରୀମାନଙ୍କ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରିଥିଲେ । ଏହି ଜ୍ଞାନ ହିଁ ଭାରତରେ ପ୍ରଥମ ଔଷଧ ଓ ପ୍ରସାଧନ ସାମଗ୍ରୀ ବିଷୟରେ ପୂରା ନିୟମ କାନୁନ ପ୍ରଣୟନ କରିବାରେ ସାହାଯ୍ୟ କରିଥିଲା । ବର୍ତ୍ତମାନ ପ୍ରଚଳିତ Drugs Actକୁ ନୂତନ ଦିଗଦର୍ଶନଦେଇ ପ୍ରଣୟନ କଲେ ସେ ।

୧୯୩୭ ମସିହାରେ ସେ କଲିକତାରେ ଭାରତ ସରକାରଙ୍କ ଅଧୀନରେ ବାୟୋଲଜିକାଲ ଷ୍ଟାଣ୍ଡାର୍ଡ଼ ଲାଇନ ଲାବୋରେଟୋରୀରେ ଫାର୍ମାକୋଲଜିଷ୍ଟ ହିସାବରେ

ଯୋଗଦେଲେ । କର୍ଣ୍ଣେଲ ଚୋପ୍ରା ଏହି ଅନୁଷ୍ଠାନର ଡାଇରେକ୍ଟର ଥିଲେ । ଆମ ଦେଶରେ ଔଷଧ ପରିବେଷଣ, ପ୍ରସ୍ତୁତି ଓ ମାନ ରକ୍ଷା ବିଷୟରେ ପ୍ରଣିଧାନ କରିବାକୁ କୌଣସି ନିୟମ କାନୁନ ନଥିଲା । ଔଷଧପ୍ରସ୍ତୁତକାରୀମାନେ ନିଜେ ନିଜର ଗୁଣାତ୍ମକ ମାନ ରକ୍ଷା କରୁଥିଲେ ଓ ଧ୍ୟାନ ଦେଉଥିଲେ । ସେମାନେ କିପରି ତାହା ରକ୍ଷା କରିବେ ସେ ବିଷୟରେ କିଛି କାନୁନ ନଥିଲା । ଡାକ୍ତର ମୁଖାର୍ଜି ଏହି ଅବସରରେ ସେତେବେଳେ ବିଭିନ୍ନ ଦେଶ ଓ ଆମ ଦେଶରେ ମିଳୁଥିବା ଔଷଧ ବିଷୟରେ ଲାବରେଟୋରୀରେ ପୁଙ୍ଖାନୁପୁଙ୍ଖ ପରୀକ୍ଷା ନିରୀକ୍ଷା କରି ମାନ ରକ୍ଷା ପ୍ରଣାଳୀ ଓ ମାନ ବିଷୟରେ ଲିପିବଦ୍ଧ କରିଥିଲେ । ଏଥିପାଇଁ ପ୍ରତ୍ୟେକ ଔଷଧରେ ଥିବା ଗୁଣ ଓ ତା'ର ଗୁଣର ବିକାଶରେ ସହାୟକ ପଦାର୍ଥମାନଙ୍କ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ ପାଇଁ ଅନ୍ୟାନ୍ୟ ବୈଜ୍ଞାନିକମାନଙ୍କୁ ନେଇ ପରୀକ୍ଷା ନିରୀକ୍ଷାରେ ଲଗାଇଥିଲେ । ସେ ପୂର୍ବରୁ ଯେଉଁ ଲାବରେଟରୀରେ କାମ କରୁଥିଲେ, ତାକୁ ବଦଳାଇ ସେଠାରେ ସେଣ୍ଟ୍ରାଲ ଡ୍ରଗସ୍ ଲାବରେଟରୀ ପ୍ରତିଷ୍ଠା କଲେ ଓ ୧୯୪୭ ମସିହାରେ ତା'ର ନିର୍ଦ୍ଦେଶକ (Director) ହେଲେ । ଏହା ଭାରତ ସରକାରଙ୍କ ଅଧୀନରେ ଔଷଧର ଗୁଣ ଓ ମାନ ନିୟମାନୁମୋଦିତ ପଦ୍ଧତିରେ ମାପ କରିବା ପାଇଁ ଉଦ୍ଦିଷ୍ଟ । ଏହି ସମୟରେ ସେ ବୈଜ୍ଞାନିକ ପ୍ରବନ୍ଧମାନ ଭାରତ ଓ ଭାରତ ବାହାରେ ଥିବା ବୈଜ୍ଞାନିକ ପତ୍ରିକାମାନଙ୍କରେ ପ୍ରକାଶ କରି ଆମ ଦେଶ ଓ ଅନ୍ୟାନ୍ୟ ଦେଶର ବୈଜ୍ଞାନିକମାନଙ୍କ ଦ୍ୱାରା ଆଦୃତ ହୋଇଥିଲେ । ଜୀବନକାଳ ଭିତରେ ଡାକ୍ତର ମୁଖାର୍ଜି ୩୫୦ ରୁ ଊର୍ଦ୍ଧ୍ୱ ବୈଜ୍ଞାନିକ ପ୍ରବନ୍ଧ ଓ ମୌଳିକ ଗବେଷଣା ପ୍ରବନ୍ଧ ପ୍ରକାଶ କରିଥିଲେ ।

୧୯୪୮-୪୯ ମସିହାରେ ତତ୍‌କାଳୀନ ପାକିସ୍ତାନ ସରକାରଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ କରାଚି ଓ ଢାକାରେ ଔଷଧ ପରୀକ୍ଷାଗାର, ଔଷଧ ଓ ପ୍ରସାଧନ ସାମଗ୍ରୀ ବିଷୟକ ନିୟମକାନୁନ ବିଷୟରେ ଉପଦେଶ ଦେବାକୁ ଯାଇଥିଲେ ।

କାଉନସିଲ ଅଫ ସାଇଣ୍ଟିଫିକ ଆଣ୍ଡ ଇଣ୍ଡଷ୍ଟ୍ରିୟାଲ ରିସର୍ଚ୍ଚ ୧୯୫୦ ମସିହାରେ ପ୍ରଥମ କରି ଲକ୍ଷ୍ନୌଠାରେ ସେଣ୍ଟ୍ରାଲ ଡ୍ରଗ ରିସର୍ଚ୍ଚ ଇନଷ୍ଟିଚିଉଟ ବସାଇବାକୁ ସ୍ଥିର କଲେ । ସେ ସମୟରେ ଡାକ୍ତର ମୁଖାର୍ଜିଙ୍କୁ ପ୍ରଥମ ଡାଇରେକ୍ଟର ଭାବରେ ଗ୍ରହଣ କରାଯାଇଥିଲା । ୧୯୫୧ ମସିହାରୁ ୧୯୬୩ ମସିହା ପର୍ଯ୍ୟନ୍ତ ସେ ଏହି ଉଚ୍ଚ ପଦବୀରେ ରହି ଔଷଧ ବିଷୟକ ଗବେଷଣା ବିଷୟରେ ଭାରତର ନାମ ବିଦେଶରେ ସୁପ୍ରତିଷ୍ଠା କରିବାରେ ସଫଳ ହୋଇଥିଲେ । ଏହି ସମୟ ମଧ୍ୟରେ ଅନେକ ବୈଜ୍ଞାନିକଙ୍କୁ ନେଇ ତାଙ୍କର ଗବେଷଣା କାର୍ଯ୍ୟ ସଫଳ କରାଇ ପାରିଥିଲେ । ବର୍ତ୍ତମାନ ସମୟରେ ମିଳୁଥିବା ଅଧିକାଂଶ ଆଣ୍ଟିବାଇଓଟିକ ବିଷୟରେ ଓ ସେମାନଙ୍କ ମାନ ନିର୍ଦ୍ଧାରଣ କରିବାରେ ସଫଳ ହୋଇଥିଲେ ।

ସରକାରୀ ଚାକିରିରୁ ଅବସର ଗ୍ରହଣ କରିଲା ପରେ ପୁଣି ଥରେ ସେ ୫ବର୍ଷ ପାଇଁ କଲିକତାସ୍ଥିତ ଚିତ୍ତରଞ୍ଜନ ନ୍ୟାସନାଲ କ୍ୟାନସର ରିସର୍ଚ୍ଚ ସେଣ୍ଟରରେ ଅଧିକାରୀଭାବେ କାର୍ଯ୍ୟ କରିଥିଲେ । ଏହି ସମୟ ମଧ୍ୟରେ କ୍ୟାନସର ପାଇଁ ଔଷଧ ବିଷୟରେ ଗବେଷଣା ଚଳାଇଥିଲେ । ବର୍ତ୍ତମାନ କ୍ୟାନସରରେ ବିଭିନ୍ନ ଔଷଧ ପ୍ରୟୋଗ ବିଷୟକ ଗବେଷଣା କଲିକତା ପାଖ ଚନ୍ଦନ ନଗରଠାରେ ହେଉଅଛି ।

ନିଜର ଜୀବନକାଳ ଭିତରେ ଏହିସବୁ କାରଣରୁ ପୃଥିବୀର ବିଭିନ୍ନ ବୈଜ୍ଞାନିକଙ୍କ ମହଲରେ ସେ ପରିଚିତ ଥିଲେ । ଭାରତର ବୈଜ୍ଞାନିକମାନଙ୍କର ଅଧିନାୟକ ହୋଇ ଅନେକ ଥର ସେ ଭାରତର ବାହାରକୁ ବିଭିନ୍ନ ବିଦେଶକୁ ଭ୍ରମଣରେ ଯାଇଥିଲେ । ୱାରଲଡ଼ ହେଲଥ ଅରଗାନାଇଜେସନରେ ଭାରତ ପକ୍ଷରୁ ସେ ବହୁତ ଥର ବିଭିନ୍ନ ବୈଜ୍ଞାନିକ ବିଷୟ ନେଇ ଯୋଗ ଦେଇଥିଲେ । ୧୯୪୩ ମସିହାରେ ନ୍ୟାସନାଲ ସାଇନ୍ସ ଏକାଡ଼େମି (N.S.A.) ତାଙ୍କୁ ତା'ର ସଭ୍ୟ ଭାବରେ ଗ୍ରହଣ କରିଥିଲା । ଏଥିରେ ସେ ଉପସଭାପତି ଭାବରେ ଓ ବାହାର ଦେଶପାଇଁ ସେକ୍ରେଟେରୀ ପଦରେ କାର୍ଯ୍ୟ କରିଥିଲେ । ଭାରତୀୟ ଔଷଧୀୟ ଗଛଲତା ବିଷୟରେ ତାଙ୍କର ମୌଳିକ ଅନୁଧ୍ୟାନ ପାଇଁ ତାଙ୍କୁ 'ଧନ୍ୱନ୍ତରୀ ପଦକ' ଦିଆଯାଇଥିଲା । ଭାରତୀୟ ମେଡ଼ିକାଲ ସାଇନ୍ସ ଫେଲୋ ଭାବରେ ୧୯୬୧ ମସିହାରେ ତାଙ୍କୁ ନିଆଯାଇଥିଲା । ସେ ଭାରତୀୟ ଫାର୍ମାସିଉଟିକାଲ ଆସୋସିଏସନର ସଭାପତି ପଦ ମଣ୍ଡନ କରିଥିଲେ । ୧୯୫୯-୬୦ ମସିହାରେ ତାଙ୍କୁ ଭାରତୀୟ ସାଇନ୍ସ କଂଗ୍ରେସର ସଭାପତି କରାଯାଇଥିଲା ।

ବୈଜ୍ଞାନିକ ପ୍ରବନ୍ଧମାନ ସର୍ବସାଧାରଣଙ୍କ ବୁଝିବା ଭାଷାରେ ସେ ପ୍ରକାଶକରି ପାରୁଥିଲେ ଓ ଅନର୍ଗଳ ବକ୍ତୃତା ମଧ୍ୟ ଦେଇ ପାରୁଥିଲେ । ୧୯୭୯ ମସିହା ଜୁଲାଇ ମାସରେ ସେ କଲିକତାଠାରେ ଦେହତ୍ୟାଗ କରିଥିଲେ ।

ଆଜି ଡକ୍ଟର ମୁଖାର୍ଜି ନାହାନ୍ତି; କିନ୍ତୁ ଭାରତୀୟ ଔଷଧ ଜଗତକୁ ତାଙ୍କ ଦାନ ଅତୁଳନୀୟ ହୋଇରହିଛି ।



# ଶିବ ପ୍ରସାଦ ଚାଟାର୍ଜୀ

**ସ୍ୱର୍ଗତ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ**

ପ୍ରଫେସର ଶିବ ପ୍ରସାଦ ଚାଟାର୍ଜୀ ୧୯୦୩ ମସିହା ଫେବୃଆରୀ ମାସ ୨୨ ତାରିଖରେ କଲିକତାରେ ଜନ୍ମଗ୍ରହଣ କରିଥିଲେ । ପଶ୍ଚିମବଙ୍ଗର ନଦିଆ ଜିଲ୍ଲାର ଶାନ୍ତିପୁର ଗ୍ରାମରେ ଏକ ବ୍ରାହ୍ମଣ ପରିବାରରେ ତାଙ୍କ ପିତାଙ୍କ ଘର । ବାଲ୍ୟ ଜୀବନର ପାଠପଢ଼ା ତାଙ୍କର କଲିକତାରେ ଆରମ୍ଭ ହୋଇଥିଲା । କଲେଜ ଓ ବିଶ୍ୱବିଦ୍ୟାଳୟ ଜୀବନ ତାଙ୍କର ବନାରସରେ କଟିଥିଲା । ବନାରସ ବିଶ୍ୱବିଦ୍ୟାଳୟରୁ ୧୯୨୬ ରେ ଏମ୍.ଏସ୍‌ସି. ଭୂତତ୍ତ୍ୱ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି କୃତିତ୍ୱ ଅର୍ଜନ କରିଥିଲେ । ସେ ସମୟରେ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଥିବା ଡାକ୍ତର କୃଷ୍ଣ କୁମାର ମାଥୁର ତାଙ୍କର ଶିକ୍ଷକ ଥିଲେ । ଛାତ୍ର ଚାଟାର୍ଜୀ ଡକ୍ଟର ମାଥୁରଙ୍କ ସଂସ୍ପର୍ଶରେ ଆସି ଗବେଷଣା ଓ Field work ପ୍ରତି ଅଧିକ ଆକୃଷ୍ଟ ହୋଇଥିଲେ । ଏଥିପାଇଁ ଡକ୍ଟର ମାଥୁର ଛାତ୍ର ଚାଟାର୍ଜୀଙ୍କ ପ୍ରତି ବଡ଼ ସଦୟ ଥିଲେ ଓ ଅଭାବ ମେଣ୍ଟାଇବା ପାଇଁ ବିଶ୍ୱବିଦ୍ୟାଳୟର ଭୂତତ୍ତ୍ୱ ବିଭାଗରେ ତାଙ୍କୁ ଡିମନଷ୍ଟ୍ରେଟର ହିସାବରେ ଏକ ଚାକିରି ଦେଇଥିଲେ । ଡକ୍ଟର ଚାଟାର୍ଜୀ ଏମ୍.ଏସ୍‌ସି. ପାଶ୍ କଲାପରେ ରେଙ୍ଗୁନରେ (ୟାଙ୍ଗୋ) କଲିକତା ବିଶ୍ୱବିଦ୍ୟାଳୟ କଲେଜର ଉଭୟ ଭୂତତ୍ତ୍ୱ ଓ ଭୂଗୋଳର ପ୍ରଧାନ ଅଧ୍ୟାପକ ରୂପେ ନିଯୁକ୍ତ ହେଲେ । ସେ ସମୟରେ ରେଙ୍ଗୁନ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ସେଠାରେ ଥିବାବେଳେ ଅଧ୍ୟାପକ ଚାଟାର୍ଜୀ ଭୌଗୋଳିକ ଶିକ୍ଷା ବିଷୟର ମହତ୍ତ୍ୱ ଉପଲବ୍ଧି କରି ସେଥିର ଉନ୍ନତିରେ ଲାଗିପଡ଼ିଲେ । ଶିବ ପ୍ରସାଦବାବୁ ରେଙ୍ଗୁନ ବିଶ୍ୱବିଦ୍ୟାଳୟରେ ପ୍ରାୟ ପାଞ୍ଚ ବର୍ଷ ଅଧ୍ୟାପନା କରିଥିଲେ । ଫ୍ରାନ୍ସର Paris University Institute of Geographyରେ ତାଙ୍କର Research କରିବାର ପ୍ରବଳ ଇଚ୍ଛା ଥିଲା । ତେଣୁ ସେ ୧୯୩୧ ମସିହାରେ ଫ୍ରାନ୍ସକୁ ଯାଇ ସେଠାରେ Research Student ହିସାବରେ ପ୍ରଫେସର ଏମ ଦା ମାର୍ଟୋନିଙ୍କ ତତ୍ତ୍ୱାବଧାନରେ କାମ କରିବାକୁ ଲାଗିଲେ ।

ଫ୍ରାନ୍ସକୁ ଯିବା ପୂର୍ବରୁ ସେ ସମୟର ଆସାମ ପ୍ରଦେଶରେ ଥିବା ଗାରୋ, ଖାସି ଓ ଜଇନ୍ତିଆ ପାର୍ବତ୍ୟ ଅଞ୍ଚଳ ଉପରେ ସେ ଯଥେଷ୍ଟ ଗବେଷଣା କାର୍ଯ୍ୟ (Field Works) କରିଥିଲେ । ପରେ ତାଙ୍କରି କାର୍ଯ୍ୟ ଅନୁସାରେ ସେ ଅଞ୍ଚଳକୁ "ମେଘାଳୟ" ଅର୍ଥାତ୍ ମେଘର ବାସସ୍ଥାନ ବୋଲି ଭାରତ ସରକାରଙ୍କ ଦ୍ୱାରା ନାମିତ କରାଯାଇଥିଲା । ପୃଥିବୀର ସର୍ବାଧିକ ବୃଷ୍ଟିପାତ ଏ ଅଞ୍ଚଳରେ ହୋଇଥାଏ । ଫ୍ରାନ୍ସରେ ପେରୀ (Paris) ବିଶ୍ୱବିଦ୍ୟାଳୟରେ ସେ ଉକ୍ତ ବିଷୟ ଉପରେ କାମ କରୁଥିଲେ । ଏହି ଗବେଷଣାଟିର ନାମ ଥିଲା — "La Plateaude Meghalaya" । ଏହା ଏତେ ସୁନ୍ଦର ଓ ଆଦରଣୀୟ ହୋଇଥିଲା ଯେ ସେହି କାର୍ଯ୍ୟ ଉପରେ ଡ. ଚାଟାର୍ଜୀ ପେରୀ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ପାଇଥିଲେ । ୧୯୩୬ ମସିହାରେ ପେରୀରେ ତାଙ୍କର ସନ୍ଦର୍ଭଟି ଫରାସୀ ଭାଷାରେ ଛପା ଯାଇଥିଲା । French Economic Geographical Society, ଏହି ସନ୍ଦର୍ଭଟିକୁ ଅତି ସାରଗର୍ଭକ ଭୌଗୋଳିକ କାର୍ଯ୍ୟ ହିସାବରେ ଗ୍ରହଣ କରିଥିଲେ । ଏଥିପାଇଁ ଡ. ଚାଟାର୍ଜୀ ଗୋଟିଏ Medal ପାଇଥିଲେ ।

ପ୍ରଫେସର O. H. K. Spate ଏବଂ ପ୍ରଫେସର A. T. A. Learmouth ଭାରତ ସମ୍ବନ୍ଧରେ ଯେଉଁ ପୁସ୍ତକ ପ୍ରକାଶିତ କରିଅଛନ୍ତି ସେଥିରେ 'ମେଘାଳୟ' ବିଷୟରେ ଲେଖିବାକୁ ଯାଇ ଲେଖିଛନ୍ତି ଯେ ଡ. ଚାଟାର୍ଜୀଙ୍କ ଦ୍ୱାରା ନାମିତ ହୋଇଥିବା "ମେଘାଳୟ" ଶବ୍ଦଟି ସଂସ୍କୃତ ଭାଷାର ଠିକ୍ ନାମକରଣ ହୋଇଛି । ଡକ୍ଟର ଚାଟାର୍ଜୀ ଲଣ୍ଡନର ବାର୍କବେକ (Birkbeck) ମହାବିଦ୍ୟାଳୟରେ ଉପରଓଳି ପଢ଼ିବା ପାଇଁ ନାମ ଲେଖାଇଥିଲେ । ଏହି ସମୟରେ ପ୍ରଫେସର ଆନଷ୍ଟିଡ୍ (Prof. Unstead) ଓ ଅନ୍ୟାନ୍ୟ ବ୍ରିଟିଶ ଭୂଗୋଳ ପ୍ରଫେସରମାନଙ୍କ ସହ ଏହି 'ମେଘାଳୟ' ତଥ୍ୟ ଉପରେ ଆଲୋଚନା କରି ସେମାନଙ୍କଠାରୁ ମଧ୍ୟ Thesis ଲେଖିବାପାଇଁ ସାହାଯ୍ୟ ପାଇଥିଲେ ସେ । ଏହି ସମୟରେ ବ୍ରିଟିଶ ଲାଇବ୍ରେରୀଗୁଡ଼ିକୁ ଯଥେଷ୍ଟ ବ୍ୟବହାର କରିଥିଲେ । ଏହି ଲାଇବ୍ରେରୀ ଜୀବନରେ ତାଙ୍କୁ ବହୁତ ଉପକାର ଦେଇଥିଲା । ଲଣ୍ଡନରେ ଥିବାବେଳେ ମୃତ୍ତିକା ବିଜ୍ଞାନ ପଢ଼ିବାକୁ ତାଙ୍କର ବହୁତ ଆଗ୍ରହ ଥିଲା । ତେଣୁ ସେ ପ୍ରଥମେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ Education (ଶିକ୍ଷା)ରେ ଡିପ୍ଲୋମା ନେଇ ପାଶ୍ କଲେ ଓ ୧୯୩୬ରେ ସେହି ବିଷୟରେ ଡକ୍ଟରେଟ ଉପାଧି ପାଇଲେ । ସେ ଏହି ଡିଗ୍ରୀ ପାଇବାରେ ପ୍ରଥମ ଭାରତୀୟ ।

ଡକ୍ଟର ଚାଟାର୍ଜୀ ଏହାପରେ ଭାରତକୁ ଫେରିଆସି କଲିକତାରେ ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କୁ ଦେଖାକଲେ । ସେତେବେଳେ ଡକ୍ଟର ମୁଖାର୍ଜୀ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଥାଆନ୍ତି । ସେ ତାଙ୍କୁ ସଙ୍ଗେ ସଙ୍ଗେ ବିଶ୍ୱବିଦ୍ୟାଳୟର ଶିକ୍ଷକ ଟ୍ରେନିଙ୍ଗ

ଡିପାର୍ଟମେଣ୍ଟରେ ଭୂଗୋଳ ପଢ଼ାଇବା ଦାୟିତ୍ୱରେ ରଖିଦେଲେ । ଡକ୍ଟର ଚାଟାର୍ଜୀଙ୍କ ଅଗାଧ ଚେଷ୍ଟା ଫଳରେ ୧୯୩୯ ମସିହାରେ ଭୂଗୋଳର ବି.ଏ. (ଅନର୍ସ) ଶ୍ରେଣୀ ବିଶ୍ୱବିଦ୍ୟାଳୟରେ ଖୋଲାଗଲା । ଶେଷରେ ୧୯୪୧ରେ ସ୍ନାତକୋତ୍ତର ଶ୍ରେଣୀ ଆରମ୍ଭ କରାଗଲା । ତେଣୁ ଉନ୍ନତ ଭୂଗୋଳ ଶିକ୍ଷାର ମୂଳଦୂଆ ଏହି ଦିନଠାରୁ ଭାରତରେ ପଡ଼ିଲା । ଡ. ଚାଟାର୍ଜୀଙ୍କ ଛାତ୍ରମାନେ ଭାରତର ବିଭିନ୍ନ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଏବେ ମଧ୍ୟ ଅଛନ୍ତି । ମୁଁ ମଧ୍ୟ ଡ. ଚାଟାର୍ଜୀଙ୍କର ଜଣେ ଛାତ୍ର । କଲିକତା ବିଶ୍ୱବିଦ୍ୟାଳୟରେ ସେ ଯେତେବେଳେ ସ୍ନାତକୋତ୍ତର ବିଭାଗକୁ ଆରମ୍ଭ କରିବାପାଇଁ ଚେଷ୍ଟିତ, ସେତିକିବେଳେ ତାଙ୍କୁ ପୁଣି ରେଙ୍ଗୁନ ବିଶ୍ୱବିଦ୍ୟାଳୟରୁ ଡାକରା ଆସିଲା, ସେଠାରେ ଭୂଗୋଳ ଓ ଭୂତତ୍ତ୍ୱ ଡିପାର୍ଟମେଣ୍ଟ ଦୁଇଟିକୁ ଅଲଗା କରିବା ପାଇଁ ଏବଂ ସେଠାକୁ ଯାଇ ତା'ର ବ୍ୟବସ୍ଥା କରିବା ଏବଂ ସେଠାରେ ବିଶ୍ୱବିଦ୍ୟାଳୟ ପ୍ରଫେସର ପଦ ଗ୍ରହଣ କରିବାପାଇଁ । ଡ. ଚାଟାର୍ଜୀ ସେଠାରେ ବର୍ଷେକାଳ ରହି ଉପରୋକ୍ତ କାର୍ଯ୍ୟ ସମ୍ପାଦନ କଲେ ଓ ପୁଣି କଲିକତା ଫେରିଆସି ବିଶ୍ୱବିଦ୍ୟାଳୟର ଭୂଗୋଳ ଡିପାର୍ଟମେଣ୍ଟର ପ୍ରଫେସର ପଦ ପ୍ରଥମ କରି ଗ୍ରହଣ କଲେ । ପୁଣି ୧୯୭୧-୭୨ ରେ ଡକ୍ଟର ଚାଟାର୍ଜୀ କାଲିଫର୍ଣ୍ଣିଆ ରାଜ୍ୟ ବିଶ୍ୱବିଦ୍ୟାଳୟରେ ଭୂଗୋଳ ବିଭାଗର ପ୍ରଫେସର ରୂପେ ସେଠାକୁ ଅଳ୍ପଦିନ ପାଇଁ ଯାଇଥିଲେ । ସେ ପୃଥିବୀର ପ୍ରଧାନ ଦେଶଗୁଡ଼ିକର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ସେଗୁଡ଼ିକରେ ଭାଷଣ ଦେଇଥିଲେ ।

ଡ. ଚାଟାର୍ଜୀ ଉପଲବ୍ଧି କଲେ ଯେ ବିଶ୍ୱବିଦ୍ୟାଳୟରେ ଖାଲି ପିଲାଙ୍କୁ ଭୂଗୋଳ ପଢ଼ାଇବା ଦ୍ୱାରା ଭୂଗୋଳ ବିଷୟର ଉନ୍ନତି ହେବନାହିଁ । ତେଣୁ ଭୂଗୋଳ ପଢ଼ି ଯେଉଁ ଜ୍ଞାନ ମିଳେ ତାହାକୁ ଦେଶର ଅଗ୍ରଗତି ଓ ଆର୍ଥିକ ଉନ୍ନତିରେ କିପରି ବିନିଯୋଗ କରାଯାଇପାରିବ, ସେ ଚିନ୍ତା ମଧ୍ୟ କରୁଥିଲେ । ଏଥିପାଇଁ ସେ କଲିକତାରେ 'ଭାରତୀୟ ଭୂଗୋଳ ପରିଷଦ' ନାମରେ ଗୋଟିଏ ସଂସ୍ଥା ଆରମ୍ଭ କଲେ । ଏହି ପରିଷଦର ସୁବର୍ଣ୍ଣ ଜୟନ୍ତୀ ୧୯୮୨ ମସିହାରେ ଅନୁଷ୍ଠିତ ହେଲା । ସେ ବହୁକାଳଧରି ଏହି ସମିତିର ସଭାପତି ଥିଲେ ଓ ତାଙ୍କରି ଚେଷ୍ଟାଦ୍ୱାରା ପତ୍ରପତ୍ରିକା ଓ ପୁସ୍ତକମାନ ପ୍ରକାଶିତ ହୋଇଥିଲା । ବଙ୍ଗଦେଶ (United Bengal) ଯେତେବେଳେ Redcliff awardଙ୍କ ଦ୍ୱାରା ଭାରତ ଓ ପାକିସ୍ତାନ ମଧ୍ୟରେ ଭାଗ କରାଗଲା, ଭାରତ ଭାଗ ଭାଗ ହେବା ଅବ୍ୟବହତ ପୂର୍ବରୁ ଏ ବିଷୟରେ ଏକ ପୁସ୍ତକ ସେ ପ୍ରକାଶ କରିଥିଲେ । ୧୯୪୯ରେ ବଙ୍ଗଳାରେ ଆଟ୍‌ଲାସଟିଏ ମଧ୍ୟ ଛପାଇଥିଲେ । ସେଥିରେ ବଙ୍ଗଳାର ବିଭିନ୍ନ ବିଷୟରେ ନାନାତଥ୍ୟ ଥିଲା, ଏ ସମସ୍ତ କାର୍ଯ୍ୟପାଇଁ ଆମର ସର୍ବପ୍ରଥମ ପ୍ରଧାନମନ୍ତ୍ରୀ ବହୁତ ଖୁସି ହୋଇଥିଲେ ଓ ଯେତେବେଳେ ୧୯୫୬ ରେ National Atlas Organisation (ଜାତୀୟ ଆଟଲାସ ସଂସ୍ଥା) ଗଠନ

କରାଗଲା, ଡକ୍ଟର ଚାଟାର୍ଜୀଙ୍କୁ ସେଥିର ନିର୍ଦ୍ଦେଶକ ରୂପେ ବାଛିଥିଲେ । ଦେଶରେ ଯୋଜନା କାର୍ଯ୍ୟରେ ଭୌଗୋଳିକ ଜ୍ଞାନ ଯେ ବିଶେଷ ଦରକାର ଏହା ସେ ସର୍ବପ୍ରଥମେ ଉପଲବ୍ଧିକରି ୧୯୪୧ ରେ ବିଜ୍ଞାନ କଂଗ୍ରେସର ମାଡ୍ରାସ ଅଧିବେଶନରେ ଭୂତତ୍ତ୍ୱ ଓ ଭୂଗୋଳ ମିଳିତ ସମିତିରେ ଏକ ସନ୍ଦର୍ଭ ପାଠ କରିଥିଲେ । ସେ ଜାତୀୟ ଆଟଲାସ ସଂସ୍ଥାର ଡିରେକ୍ଟର ହୋଇ ମଧ କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗକୁ ଚଳାଉଥିଲେ । ଆଟଲାସ ତିଆରି ହେବାପରେ ସାରା ପୃଥିବୀର ବିଭିନ୍ନ ଦେଶରେ ଆଦୃତ ହେଲା । ଏହି ନୂତନ ଅଭୂତପୂର୍ବ କାର୍ଯ୍ୟପାଇଁ ଡକ୍ଟର ଚାଟାର୍ଜୀ Royal Geographical Society of Londonର Murchison grant ଓ ବାରାଣସୀର National Geographical Societyରୁ (୧୯୬୩) ଜବାହରଲାଲ ମେଡ଼ାଲ ପାଇଥିଲେ ।

ଏହାବ୍ୟତୀତ ସେ ପଶ୍ଚିମବଙ୍ଗ ଓ ଭାରତର କୃଷି ମାନଚିତ୍ର ମଧ ପ୍ରକାଶ କରିଥିଲେ । International Association of Agricultural Economists ସହାୟତାରେ ସେ ଭାରତର ମାନଚିତ୍ର ତିଆରି କରିଥିଲେ । ଏହି ମାନଚିତ୍ରଗୁଡ଼ିକୁ ଇଟାଲୀର Novara ସ୍ଥିତ The Institute Geographico De Agostini, ସଂସ୍ଥା ଦ୍ୱାରା "ପୃଥିବୀର କୃଷି ମାନଚିତ୍ର" ରେ ଛପାଯାଇଥିଲା । ସେ ତାଙ୍କ ଜୀବନରେ ପୃଥିବୀର ବିଭିନ୍ନ ଦେଶର ଭୌଗୋଳିକ ସଂସ୍ଥା ସହିତ ଜଡ଼ିତ ଥିଲେ । ୧୯୫୫ ରେ ସେ ସୋଭିଏତ ଭୌଗୋଳିକ କଂଗ୍ରେସ (Geographical Congress)ରେ ଯୋଗଦାନ କରିଥିଲେ । ଦିଲ୍ଲୀରେ ହୋଇଥିବା ଆନ୍ତର୍ଜାତିକ ଭୌଗୋଳିକ କଂଗ୍ରେସର ସେ ସଭାପତି ଥିଲେ । ୧୯୬୪-୬୮ ପର୍ଯ୍ୟନ୍ତ ସେ International Geographic Unionର ମଧ ସଭାପତି ଥିଲେ । ଏଥିଯୋଗୁଁ ତାଙ୍କୁ ପୃଥିବୀର ବିଭିନ୍ନ ଦେଶ ଭ୍ରମଣ କରିବାକୁ ପଡୁଥିଲା । ତେଣୁ ଅନ୍ୟ ଦେଶମାନଙ୍କରେ ଭୂଗୋଳ ବିଦ୍ୟାର ଗତି ଓ ଉନ୍ନତି କିପରି ହେଉଛି ତାହା ତାଙ୍କୁ ବେଶ୍ ଜଣାଥିଲା । ତେଣୁ ଭାରତରେ ଭୂଗୋଳ ବିଦ୍ୟାର କିପରି ଉନ୍ନତି ହେବ ସେଥିପାଇଁ ସେ ସର୍ବଦା ସଚେଷ୍ଟ ଥିଲେ ।

ପ୍ରଫେସର ଚାଟାର୍ଜୀଙ୍କର ବୟସ ଯଥେଷ୍ଟ ହୋଇଥିଲେ ମଧ ସେ Research କାମରେ ସର୍ବଦା ନିଜକୁ ନିୟୋଜିତ କରିଥିଲେ । ସେ ଜଣେ ବିଶ୍ୱବିଦ୍ୟାଳୟର ଶିକ୍ଷକ ରୂପେ ବହୁତ ଖ୍ୟାତିଲାଭ କରିଥିଲେ । କଲିକତାରେ ଥିବା ତାଙ୍କ ଘରକୁ ସେ Research Institute for the Advancement of Geographical Science ପାଇଁ ଦାନ କରିଅଛନ୍ତି ।





# ପଞ୍ଚାନନ ମହେଶ୍ୱରୀ

**ସ୍ୱର୍ଗତ ପ୍ରଫେସର ଡକ୍ଟର ଗଦାଧର ମିଶ୍ର**

ରାତି ପ୍ରାୟ ଗୋଟାକବେଳେ ପ୍ରୟାଗ ଶ୍ମଶାନ ଘାଟରେ ପିତା ବିଜେ ଲାଲଙ୍କ ଶବ ସତ୍କାର କ୍ରିୟା ସମାପନ କରି ଯୁବକ ପଞ୍ଚାନନ ଅଶ୍ରୁପୂର୍ଣ୍ଣ ନୟନରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ତା' ପରଦିନ ସକାଳ ନଅଟାରେ ସବୁଦିନ ଭଳି ପଞ୍ଚାନନ ମହେଶ୍ୱରୀ ଏଲାହାବାଦ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ଗବେଷଣାଗାରରେ ନିଜ ଗବେଷଣା କାର୍ଯ୍ୟରେ ନିମଗ୍ନ ରହିଲେ । ବିଦ୍ୟାଧ୍ୟୟନ ଓ ଗବେଷଣା ପ୍ରତି ଏଭଳି ପ୍ରଗାଢ଼ ମମତା ସେଦିନ ବିଶ୍ୱବିଦ୍ୟାଳୟରେ ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲା । ସେ ଯେ ଭବିଷ୍ୟତରେ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ହୋଇ ଗଢ଼ିଉଠିବେ ତାହା ସେହି ଛୋଟ ଘଟଣାଟିରୁ ପରିସ୍ଫୁଟ ହୋଇଥିଲା । ସତକୁ ସତ ପରବର୍ତ୍ତୀ ସମୟରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକରୂପେ ଡକ୍ଟର ମହେଶ୍ୱରୀ ନିଯୁକ୍ତି ପାଇଥିଲେ ଓ ୧୯୫୦ ମସିହାରେ ଷ୍ଟକହୋମଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଉଦ୍ଭିଦ ବିଜ୍ଞାନ କଂଗ୍ରେସର ଉପସଭାପତି, ୧୯୫୪ ମସିହାରେ ପ୍ୟାରିସଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଉଦ୍ଭିଦ ବିଜ୍ଞାନ କଂଗ୍ରେସର ଭ୍ରୂଣତତ୍ତ୍ୱ (Embryology) ବିଭାଗର ସଭାପତି ଓ ୧୯୫୯ ମସିହାରେ କାନାଡ଼ାର ମଣ୍ଟ୍ରିଏଲଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଉଦ୍ଭିଦ ବିଜ୍ଞାନ କଂଗ୍ରେସର ଶରୀରଗଠନ (Morphology) ବିଭାଗର ଉପସଭାପତିରୂପେ ମନୋନୀତ ହୋଇ ପୃଥିବୀରେ ଭାରତୀୟ ବୈଜ୍ଞାନିକମାନଙ୍କର ଉତ୍କର୍ଷ ପ୍ରତିଷ୍ଠିତ କରାଇଥିଲେ ।

୧୯୦୪ ମସିହା ନଭେମ୍ବର ନଅ ତାରିଖରେ ପଞ୍ଚାନନ ମହେଶ୍ୱରୀ ରାଜସ୍ଥାନର ଜୟପୁରଠାରେ ଜନ୍ମଗ୍ରହଣ କରିଥିଲେ । ଜୟପୁରରେ ସ୍କୁଲଶିକ୍ଷା ସମାପ୍ତ କରି ୧୯୨୧ ମସିହାରେ ଆଇ.ଏସ୍‌ସି., ପଢ଼ିବାପାଇଁ ଏଲାହାବାଦର ଇଉଇଙ୍ଗ୍ କ୍ରିଷ୍ଟିଆନ୍ କଲେଜରେ ଯୋଗଦେଇଥିଲେ । ୧୯୨୩ ମସିହାରେ ଆଇ.ଏସ୍‌ସି., ୧୯୨୫ ମସିହାରେ ବି.ଏସ୍‌ସି.

ଓ ୧୯୨୭ ମସିହାରେ ଏଲାହାବାଦ ବିଶ୍ୱବିଦ୍ୟାଳୟରୁ ଏମ୍.ଏସ୍‌ସି. ପାଶ କରିସାରି ୧୯୨୮ ମସିହାରେ ସେ ଇଉଙ୍ଗ୍ କ୍ରିଷ୍ଟିଆନ୍ କଲେଜରେ ଅଧ୍ୟାପକରୂପେ ଯୋଗଦେଇଥିଲେ । ଅଧ୍ୟାପନା କାର୍ଯ୍ୟ ସହିତ ସେଠି ଡକ୍ଟର ଉଇନ୍‌ଫିଲଡ୍ ଡଜନ୍‌ଙ୍କ ତତ୍ତ୍ୱାବଧାନରେ ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୩୧ ମସିହାରେ ତାଙ୍କର ଉତ୍କୃଷ୍ଟ ଗବେଷଣା କାର୍ଯ୍ୟପାଇଁ ଏଲାହାବାଦ ବିଶ୍ୱବିଦ୍ୟାଳୟରୁ ଡି.ଏସ୍‌ସି. ଡିଗ୍ରୀରେ ଭୂଷିତ ହୋଇଥିଲେ ।

୧୯୩୦ ମସିହାରେ ଡକ୍ଟର ମହେଶ୍ୱରୀ ଆଗ୍ରା କଲେଜରେ ଉଦ୍ଭିଦ ବିଜ୍ଞାନ ଅଧ୍ୟାପକରୂପେ ଯୋଗଦାନ କରିଥିଲେ । ସେଠାରେ ସେ ପରେ ପ୍ରାଧ୍ୟାପକ ପଦବୀକୁ ଉନ୍ନୀତ ହୋଇ ୧୯୩୬ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ୧୯୩୭ ମସିହାରେ ସେ ଏଲାହାବାଦ ବିଶ୍ୱବିଦ୍ୟାଳୟରେ ଓ ୧୯୩୯ ମସିହା ଜୁଲାଇ ମାସରୁ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ସେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲେ । ୧୯୩୯ ନଭେମ୍ବର ମାସରେ ସେ ଢାକା ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ବିଭାଗରେ ରିଡ଼ର ଓ ବିଭାଗୀୟ ମୁଖ୍ୟରୂପେ ଯୋଗଦାନ କରିଥିଲେ । ୧୯୪୭ ମସିହାରେ ସେ ଢାକା ବିଶ୍ୱବିଦ୍ୟାଳୟରେ ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରଫେସର ପଦକୁ ଉନ୍ନୀତ ହୋଇଥିଲେ ଓ ବିଜ୍ଞାନ ଫାକଲଟିର ଡିନ୍ ନିଯୁକ୍ତ ହୋଇଥିଲେ । ୧୯୪୯ ମସିହା ମାର୍ଚ୍ଚ ମାସରେ ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟରୂପେ ଯୋଗଦାନ କରିଥିଲେ ଓ ମୃତ୍ୟୁ ପର୍ଯ୍ୟନ୍ତ ସେହି ପଦବୀରେ ଅଧିଷ୍ଠିତ ଥିଲେ ।

ଅଧ୍ୟାପକ ମହେଶ୍ୱରୀ ଉଚ୍ଚତର ଗବେଷଣା ପାଇଁ ବିଦେଶରେ ବହୁ ଗବେଷଣାଗାରକୁ ଯିବାକୁ ସୁଯୋଗ ଲାଭ କରିଥିଲେ । ୧୯୩୬-୩୭ ମସିହାରେ ସେ ଜର୍ମାନୀର କିଏଲ ବିଶ୍ୱବିଦ୍ୟାଳୟରେ ଗବେଷଣା କାର୍ଯ୍ୟ କରୁଥିଲାବେଳେ ଇଉରୋପ ଓ ଇଂଲଣ୍ଡର ବିଭିନ୍ନ ବିଶ୍ୱବିଦ୍ୟାଳୟ ପରିଦର୍ଶନ କରିଥିଲେ । ଭିଏନା ବିଶ୍ୱବିଦ୍ୟାଳୟର ଅଧ୍ୟାପକ କାର୍ଲ ସ୍ନାର୍କ (Karl Schnark)ଙ୍କ ଗବେଷଣା ତାଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ୧୯୪୫ ମସିହାରେ ସେ ଦ୍ୱିତୀୟଥର ଇଉରୋପ ଓ ଯୁକ୍ତରାଷ୍ଟ୍ର ଆମେରିକା ଯାଇଥିଲେ । ଏଥର ସେ ବହୁ ସମୟ ହାରଭାର୍ଡ଼ ବିଶ୍ୱବିଦ୍ୟାଳୟରେ ଗବେଷଣା କାର୍ଯ୍ୟରେ ନିବିଷ୍ଟ ରହିଥିଲେ । ମାସୁଚୁସେଟସ୍‌ର ସ୍ମିଥ କଲେଜର ଅଧ୍ୟାପକ ଏ. ଏଫ୍. ବ୍ଲାକସ୍ଲିଙ୍କ ତତ୍ତ୍ୱାବଧାନରେ ସେ କିଛି ଦିନ ପରୀକ୍ଷାମୂଳକ ଭ୍ରୂଣତତ୍ତ୍ୱ (Experimental embryology) ବିଷୟରେ ଗବେଷଣା କରିବାର ସୁଯୋଗ ଲାଭ କରିଥିଲେ । ୟୁନେସ୍କୋ ସଂସ୍ଥାର ନିମନ୍ତ୍ରଣକ୍ରମେ

ସେ ୧୯୫୨ ମସିହାରେ ଇଣ୍ଡୋନେସିଆ ଓ ୧୯୫୪ ମସିହାରେ ମିଶର ଦେଶର ବିଜ୍ଞାନ ଗବେଷଣା ବ୍ୟବସ୍ଥା ନିରୀକ୍ଷଣ କରିବାଲାଗି ଯାଇଥିଲେ । ଭାରତ ସରକାର ଓ ଫୋର୍ଡ଼ ଫାଉଣ୍ଡେସନ୍ ଆନୁକୂଲ୍ୟରେ ୧୯୫୬ ମସିହାରେ ସେ ଯୁକ୍ତରାଷ୍ଟ୍ର ଆମେରିକାରେ ସାଧାରଣ ଶିକ୍ଷା ସମ୍ବନ୍ଧରେ ତଥ୍ୟସଂଗ୍ରହ କରିବାକୁ ଏକ ବିଶେଷଜ୍ଞ କମିଟିର ସଦସ୍ୟରୂପେ ସେଠାକୁ ଯାଇଥିଲେ । ୧୯୫୮ ମସିହାରେ ଭାରତ ସରକାରଙ୍କ ତରଫରୁ ପ୍ରେରିତ ଏକ ବୈଜ୍ଞାନିକ ପ୍ରତିନିଧି ଦଳର ସଭ୍ୟରୂପେ ଅଧ୍ୟାପକ ମହେଶ୍ୱରୀ ଋଷିଆ ପରିଭ୍ରମଣରେ ଯାଇଥିଲେ । ୧୯୫୯ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ଇଲିନଏସ୍ ବିଶ୍ୱବିଦ୍ୟାଳୟରେ ପରିଦର୍ଶକ ଅଧ୍ୟାପକରୂପେ ଡକ୍ଟର ମହେଶ୍ୱରୀ ଗବେଷଣା କାର୍ଯ୍ୟ କରିଥିଲେ । ୧୯୬୧ ମସିହାରେ ଜର୍ମାନ୍ ସରକାରଙ୍କ ନିମନ୍ତ୍ରଣକ୍ରମେ ସେ ପଶ୍ଚିମ ଜର୍ମାନୀର ଅନେକଗୁଡ଼ିଏ ବିଶ୍ୱବିଦ୍ୟାଳୟ ପରିଦର୍ଶନ କରିଥିଲେ ଓ ହାଲେଠାରେ ଅନୁଷ୍ଠିତ ହୋଇଥିବା ଜର୍ମାନ ଉଦ୍ଭିଦ ବିଜ୍ଞାନ ସଂସଦର ବାର୍ଷିକ ସମ୍ମିଳନୀରେ ଯୋଗଦାନ କରିଥିଲେ ।

ସପୁଷ୍ପକ ଆବୃତବୀଜ ଓ ନଗ୍ନବୀଜ ଉଦ୍ଭିଦର ଶରୀର ଗଠନ ଓ ଭ୍ରୂଣତତ୍ତ୍ୱ ମୁଖ୍ୟତଃ ତାଙ୍କ ଗବେଷଣାର ବିଷୟ । ୧୯୩୧ ମସିହାରେ ଆଗ୍ରା କଲେଜରେ ସେ ପ୍ରଥମେ ତାଙ୍କ ତତ୍ତ୍ୱାବଧାନରେ ଛାତ୍ରମାନଙ୍କୁ ଗ୍ରହଣକରି ଗବେଷଣା କାର୍ଯ୍ୟ ଆରମ୍ଭ କରାଇଥିଲେ । ୧୯୨୯ ମସିହାରୁ ୧୯୬୩ ମସିହା ମଧ୍ୟରେ ସେ ଓ ତାଙ୍କ ଗବେଷକ ଛାତ୍ରଛାତ୍ରୀମାନେ ୧୩୪ଟି ଉଚ୍ଚକୋଟୀର ଗବେଷଣାତ୍ମକ ମୌଳିକ ପ୍ରବନ୍ଧ ପ୍ରକାଶ କରିଛନ୍ତି ଓ ତାଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟକରି ୩୦ ଜଣ ଛାତ୍ର ଡକ୍ଟରେଟ୍ ଉପାଧିପ୍ରାପ୍ତ ହୋଇଛନ୍ତି । ଅଧ୍ୟାପକ ମହେଶ୍ୱରୀ ସାତଟି ଉଚ୍ଚକୋଟୀର ଉଦ୍ଭିଦ ବିଜ୍ଞାନ ପୁସ୍ତକ ପ୍ରଣୟନ ଓ ସଂପାଦନ କରିଛନ୍ତି । ତାଙ୍କର ଗବେଷଣାର ଉତ୍କୃଷ୍ଟତା ପାଇଁ ତାଙ୍କୁ ଭାରତବର୍ଷରେ ଓ ବିଦେଶରେ ବହୁତ ସମ୍ମାନ ମିଳିଛି । ୧୯୩୪ ମସିହାରେ ଅଧ୍ୟାପକ ମହେଶ୍ୱରୀ ବାଙ୍ଗାଲୋରସ୍ଥିତ ଇଣ୍ଡିଆନ୍ ଏକାଡ଼େମୀ ଅଫ୍ ସାଇନ୍ସେସ୍‌ର ଓ ୧୯୩୫ ମସିହାରେ ଭାରତୀୟ ନ୍ୟାସନାଲ ଇନ୍‌ଷ୍ଟିଚିଉଟ୍ ଅଫ୍ ସାଇନ୍ସେସ୍‌ର ଫେଲୋରୂପେ ନିର୍ବାଚିତ ହୋଇଥିଲେ ।୧୯୪୫ ମସିହାରେ ସେ ଭାରତୀୟ ଉଦ୍ଭିଦ ବିଜ୍ଞାନ ସଂସଦର ବାର୍ତ୍ତାସଦସ୍ୟରୂପେ ଓ ଆମେରିକାର କଳା ଓ ବିଜ୍ଞାନ ସଂସଦର ବହିର୍ଦ୍ଦେଶୀୟ ଫେଲୋରୂପେ; ୧୯୫୦ ମସିହାରେ ପୁନାଠାରେ ଅନୁଷ୍ଠିତ ଭାରତୀୟ ବିଜ୍ଞାନ କଂଗ୍ରେସର ଉଦ୍ଭିଦ ବିଜ୍ଞାନ ଶାଖାର ସଭାପତିରୂପେ; ୧୯୫୬ ମସିହାରୁ ୧୯୬୨ ମସିହା ପର୍ଯ୍ୟନ୍ତ ଭାରତୀୟ ନ୍ୟାସନାଲ ଇନ୍‌ଷ୍ଟିଚିଉଟ୍ ଅଫ୍ ସାଇନ୍ସେସ୍‌ର ଜୀବବିଜ୍ଞାନ ବିଭାଗର ସମ୍ପାଦକରୂପେ ଏବଂ ୧୯୫୯ ମସିହାରେ ଜର୍ମାନୀର ହାଲେସ୍ଥିତ ପ୍ରାକୃତିକ ବିଜ୍ଞାନ ସଂସଦର ବହିର୍ଦ୍ଦେଶୀୟ ସଦସ୍ୟରୂପେ ନିର୍ବାଚିତ ହୋଇଥିଲେ । ୧୯୫୯ ମସିହାରେ

କାନାଡ଼ାର ମଣ୍ଟ୍ରିଏଲସ୍ଥିତ ମ୍ୟାକ୍‌ଗିଲ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧିରେ ଭୂଷିତ କରିଥିଲେ । ଉଦ୍ଭିଦ ବିଜ୍ଞାନକୁ ତାଙ୍କର ଉଚ୍ଚକୋଟୀର ଅବଦାନ ପାଇଁ ଭାରତୀୟ ଉଦ୍ଭିଦ ବିଜ୍ଞାନ ସଂସଦ ତାଙ୍କୁ ୧୯୫୯ ମସିହାରେ ବୀରବଲ ସାହାନି ମେଡ଼ାଲ ପ୍ରଦାନ କରିଥିଲେ । ଇଂଲଣ୍ଡର ରୟାଲ ସୋସାଇଟି ତାଙ୍କୁ ଫେଲୋରୂପେ (FRS) ଗ୍ରହଣ କରି ସମ୍ମାନ ପ୍ରଦର୍ଶନ କରିଥିଲେ ।

ଉଚ୍ଚକୋଟୀର ଅଧ୍ୟାପନା ଯୋଗୁଁ ଶିକ୍ଷକରୂପେ ଅଧାପକ ମହେଶ୍ୱରୀ ତାଙ୍କର ଅଗଣିତ ଛାତ୍ରଛାତ୍ରୀଙ୍କର ଭକ୍ତିଭାଜନ ହୋଇଥିଲେ । ଉଚ୍ଚମାନର ନହେଲେ କୌଣସି ଗବେଷଣା କାର୍ଯ୍ୟରେ ତାଙ୍କର ମନ ମାନୁନଥିଲା । ସମୟାନୁବର୍ତ୍ତିତା ଓ କଠୋର ପରିଶ୍ରମ ତାଙ୍କ ଜୀବନର ବ୍ରତ ଥିଲା । ସେ ନିଜେ ସକାଳ ନଅଟାରୁ ରାତି ପର୍ଯ୍ୟନ୍ତ ବିଜ୍ଞାନାଗାରରେ ରହୁଥିବାରୁ ସହକର୍ମୀ ଶିକ୍ଷକ ଓ ଗବେଷକ ଛାତ୍ରମାନଙ୍କର କାର୍ଯ୍ୟ କଠୋର ଭାବରେ ତଦାରଖ କରୁଥିଲେ । ଦେଶବିଦେଶର ବହୁରକମର ଦୁଷ୍ପ୍ରାପ୍ୟ ଉଦ୍ଭିଦର ନମୁନା ସେ ନିଜେ ସଂଗ୍ରହ କରି ରଖୁଥିଲେ । ଉଦ୍ଭିଦର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ମାଇକ୍ରୋଟୋମ୍ ସାହାଯ୍ୟରେ କାଟି ସେଗୁଡ଼ିକୁ ଉପଯୁକ୍ତ ରଞ୍ଜକ ଦ୍ରବ୍ୟଦ୍ୱାରା ରଞ୍ଜନ କରାଇବାରେ ସେ ସିଦ୍ଧହସ୍ତ ଥିଲେ । ଉଦ୍ଭିଦଗୁଡ଼ିକର ଅନ୍ତଃଶରୀର ଗଠନ (Anatomy), ଭ୍ରୂଣତତ୍ତ୍ୱ ଓ ଜୀବନଚକ୍ର (life cycle) ଅନୁସନ୍ଧାନ କରିବାପାଇଁ ସେ ନିଜେ ଏତେ ସୁନ୍ଦର ସୁନ୍ଦର ସ୍ଲାଇଡ୍ ତିଆରି କରୁଥିଲେ ଯେ ସେ ସ୍ଲାଇଡ୍‌ଗୁଡ଼ିକୁ ଭାରତବର୍ଷ ଓ ବିଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ କଲେଜ କିଣିବା ପାଇଁ ଅତି ଆଗ୍ରହ ପ୍ରକାଶ କରୁଥିଲେ । କଠୋର ଅଧ୍ୟବସାୟ ଯୋଗୁଁ ସେ ହଠାତ୍ ଦିନେ ଅସୁସ୍ଥ ହୋଇପଡ଼ିଲେ ଓ ମାତ୍ର ୬୨ ବର୍ଷ ବୟସରେ ୧୯୬୬ ମସିହା ମେ ମାସ ୧୮ ତାରିଖରେ ତାଙ୍କର ଦେହାବସାନ ଘଟିଲା । ତାଙ୍କର ତିରୋଧାନରେ କେବଳ ଭାରତ ନୁହେଁ, ପୃଥିବୀର ବିଜ୍ଞାନ ଆକାଶରୁ ଏକ ଅତି ଉଜ୍ଜ୍ୱଳ ଜ୍ୟୋତିଷ୍କର ବିଲୟ ଘଟିଲା । ନିକଟ ଭବିଷ୍ୟତରେ ଏଭଳି ଦେଦୀପ୍ୟମାନ ଜ୍ଞାନୀ ଓ କର୍ତ୍ତବ୍ୟରତ ବୈଜ୍ଞାନିକଙ୍କର ଶୂନ୍ୟସ୍ଥାନ ପୂରଣ ହୋଇପାରିବାର ସମ୍ଭାବନା ଅଳ୍ପ ।





# ଇରାବତୀ କାର୍ଭେ

ଡାକ୍ତର ଅଞ୍ଜଳି ମହାପାତ୍ର

ଇରାବତୀ ନାମକରଣଟି ଟିକିଏ ଅସ୍ୱାଭାବିକ ମନେ ହୁଏ । ତେବେ ଇରାବତୀ କାର୍ଭେଙ୍କ ସମଗ୍ର ଜୀବନ ମଧ୍ୟ ଥିଲା ଅସ୍ୱାଭାବିକ । ହରି ଗଣେଶ କର୍ମକାରଙ୍କ ଏହି କନ୍ୟାସନ୍ତାନଟି ଜନ୍ମଗ୍ରହଣ କରିଥିଲେ ବର୍ମା (ମିଆଁମାର)ରେ । ତାଙ୍କର ଜନ୍ମତିଥି ୧୯୦୫ ମସିହା ଡିସେମ୍ବର ୧୫ ତାରିଖ ।

ପାଠପଢ଼ିବା ପାଇଁ ସାତ ବର୍ଷ ବୟସରେ ତାଙ୍କୁ ଭାରତ ପଠେଇ ଦିଆଗଲା । ପୁଣେର ହୁଜୁର ପାଗା ନାମକ ସ୍ଥାନରେ ଥିବା ଏକ ଛାତ୍ରୀ ଆବାସିକ ବିଦ୍ୟାଳୟରେ ଭର୍ତ୍ତିହେଲେ ସେ । ସେଠାରେ ତାଙ୍କର ବନ୍ଧୁତା ହେଲା ଶକୁନ୍ତଳା ପାରଞ୍ଜପେଙ୍କ ସହ । ଶକୁନ୍ତଳା ଥିଲେ ତାଙ୍କର ସହପାଠିନୀ । ଶକୁନ୍ତଳାଙ୍କ ମାଆଙ୍କ ପ୍ରରୋଚନାରେ ଇରାବତୀ ଆସି ସେହି ପରିବାରରେ ରହିଲେ । ସେଠାରେ ହିଁ ତାଙ୍କ ଭବିଷ୍ୟତ ଗତିପଥର ମୂଳଦୁଆ ସ୍ଥାପିତ ହୋଇଗଲା । ପାରଞ୍ଜପେ ପରିବାର ଥିଲା ନାସ୍ତିକ । କିନ୍ତୁ ପରିବାରର ପରିବେଶ ଥିଲା ବୌଦ୍ଧିକ । ସେଠି ରହଣି ସମୟରେ ସେ ବିଭିନ୍ନ ପ୍ରକାରର ପୁସ୍ତକ ପଢ଼ିବାର ସୁଯୋଗ ପାଇଲେ । ବହୁ ଗୁଣୀଜ୍ଞାନୀ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିପାରିଲେ । ବିଶେଷକରି ବିଚାରପତି ବାଲକ୍ରମ ତାଙ୍କଠାରେ ଜାଗ୍ରତ କରେଇଦେଲେ ନୃତତ୍ତ୍ୱ ପ୍ରତି ପ୍ରେମ । ବାଲକ୍ରମ୍ ତାଙ୍କୁ ଧାରଣା ଦେଲେ ଯେ ନୃତତ୍ତ୍ୱ ବିଷୟରେ ଜ୍ଞାନ ଅର୍ଜନ କଲେ ସେ ମାନବଜାତିର ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ସମାଜ ଓ ସାମାଜିକତା ସମ୍ପର୍କରେ ଅନେକ କିଛି ଜାଣିପାରିବେ । ବାସ୍, ଇରାବତୀ ଏହି କ୍ଷେତ୍ରଟିକୁ ଆଦରି ନେଲେ ଓ ଅର୍ଜନ କଲେ ଅସାଧାରଣ ବ୍ୟୁତ୍ପତ୍ତି ।

ସେଠାରେ ରସାୟନ ବିଭାଗ ପ୍ରଫେସର ଦିନକର କାର୍ଭେଙ୍କ ସହ ତାଙ୍କର ସାକ୍ଷାତ୍ ଘଟିଲା । ଦିନକର ଥିଲେ ପୁଣେସ୍ଥିତ ଫର୍ଗୁସନ କଲେଜ୍‌ର ଅଧ୍ୟାପକ ଏବଂ ମହର୍ଷି ଧୋଣ୍ଡୋ କେଶବ କାର୍ଭେଙ୍କର ଦ୍ୱିତୀୟ ପୁତ୍ର । ଭାରତରେ ନାରୀଶିକ୍ଷା ଓ ବିଧବା ବିବାହ ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ କେଶବ କାର୍ଭେ ।

ଫର୍ଗୁସନ୍ କଲେଜରୁ ବି.ଏ. ପାସ କରି ଇରାବତୀ ସମାଜ ବିଜ୍ଞାନ ଶାଖାରେ ଏମ୍.ଏ. ଡିଗ୍ରୀ ହାସଲ କଲେ । ତାଙ୍କର ମାର୍ଗଦର୍ଶକ ଥିଲେ ଡକ୍ଟର ଜି.ଏସ୍. ଘୁରେ । ଘୁରେ ବମ୍ବେ (ମୁମ୍ବାଇ) ବିଶ୍ୱବିଦ୍ୟାଳୟରେ ସମାଜ ବିଜ୍ଞାନ ଶାଖା ପ୍ରତିଷ୍ଠା କରିଥିଲେ । ଇରାବତୀଙ୍କ ନିଷ୍ଠା ଏବଂ ମେଧାରେ ଅଭିଭୂତ ହୋଇପଡ଼ିଲେ ତାଙ୍କ ସ୍ୱାମୀ ପ୍ରଫେସର ଦିନକର । ସେ ତାଙ୍କୁ ଧାରଣା ଦେଲେ ଯେ ବିଦେଶରେ ଶିକ୍ଷାପ୍ରାପ୍ତ ନ ହେଲେ ତାଙ୍କ ଅନ୍ତର୍ନିହିତ ସାମର୍ଥ୍ୟର ସଦୁପଯୋଗ ହୋଇପାରିବନି । ତେଣୁ ସ୍ୱାମୀଙ୍କ ପ୍ରେରଣାରେ ଇରାବତୀ ବର୍ଲିନ୍ ଯାତ୍ରା କଲେ । ସେଠାରେ କାଇଜର୍ ଉଇଲ୍‌ହେଲ୍ମ ଇନ୍‌ଷ୍ଟିଚିଉଟ୍ ଅଫ୍ ଆନ୍ଥ୍ରୋପୋଲୋଜି (ନୃତତ୍ତ୍ୱ), ଇଉଜେନିକ୍ସ (ସୁପ୍ରଜନନ ବିଦ୍ୟା) ଏଣ୍ଡ୍ ହ୍ୟୁମ୍ୟାନ୍ ହେରେଡ଼ିଟି (ମାନବ ବଂଶାନୁକ୍ରମ) ପ୍ରତିଷ୍ଠାନର ନିର୍ଦ୍ଦେଶକ ପ୍ରଫେସର ଇଉଜେନ୍ ଫିସରଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ୧୯୩୦ ମସିହାରେ ପ୍ରାପ୍ତ ହେଲେ ପିଏଚ୍.ଡି. ଡିଗ୍ରୀ ।

ଭାରତ ବାହୁଡ଼ି ଆସି ପୁଣେସ୍ଥିତ ଏସ୍.ଏନ୍.ଡି.ଟି. କଲେଜର ରେଜିଷ୍ଟ୍ରାର୍ ରୂପେ ସ୍ୱଳ୍ପସମୟ ପାଇଁ ଅବସ୍ଥାପିତ ହୋଇଥିଲେ ଇରାବତୀ । କିନ୍ତୁ ପ୍ରଶାସନିକ କାର୍ଯ୍ୟରେ ତାଙ୍କର ମନ ଲାଗିଲା ନାହିଁ । ବୈଜ୍ଞାନିକ ଗବେଷଣା ପାଇଁ ମନ ବ୍ୟାକୁଳ ହୋଇ ଉଠିଲା । ତେଣୁ ସେ ଡେକାନ୍ କଲେଜ ପୋଷ୍ଟ ଗ୍ରାଜୁଏଟ୍ ରିସର୍ଚ୍ଚ ଇନ୍‌ଷ୍ଟିଚିଉଟ୍‌ରେ ଯୋଗ ଦେଲେ ଏବଂ ଉକ୍ତ ପ୍ରତିଷ୍ଠାନର ପୃଷ୍ଠପୋଷକତା ଲାଭକରି ସେଠାରେ ହିଁ କଟେଇ ଦେଲେ ତାଙ୍କ ବୃତ୍ତିଗତ ଜୀବନର ଅବଶିଷ୍ଟ କାଳ ।

ହେଲେ କେଉଁ ସମସ୍ୟାକୁ ନେଇ ଘାରି ହେଉଥିଲେ ସେ ? ସମସ୍ୟାଗୁଡ଼ିକ ଥିଲା ଅତ୍ୟନ୍ତ ମୌଳିକ । ସେ ନିଜକୁ ପ୍ରଶ୍ନ କଲେ, ‘‘ଭାରତୀୟଙ୍କର ସ୍ୱତନ୍ତ୍ରତା କ’ଣ ? ଭାରତୀୟମାନେ ଏଭଳି ଭାବରେ ବିକାଶ ଲାଭ କରିଛନ୍ତି କାହିଁକି ?’’ ଏହି ପ୍ରଶ୍ନର ଉତ୍ତର ପାଇବା ଆଦୌ ସହଜ ସାଧ୍ୟ ନଥିଲା । କିନ୍ତୁ ଏହାର ଉତ୍ତର ଜାଣିବା ପାଇଁ ଭାରତର ସାଂସ୍କୃତିକ ତଥା ପ୍ରାକୃତିକ ରୂପରେଖ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ ଲୋଡ଼ା । ଅନୁଧ୍ୟାନ କରିବାକୁ ପଡ଼ିବ ଏହାର ଆଦି ଇତିହାସ, ଲୋକକଥା, ଲୋକଗଳ୍ପ, ଲୋକଗୀତ ତଥା ପରବର୍ତ୍ତୀ ଇତିହାସ । ସାରା ଭାରତର ବିଭିନ୍ନ ସ୍ଥାନରେ ଯେଉଁ ପ୍ରାଗ୍-ଐତିହାସିକ ଏବଂ ଐତିହାସିକ ସ୍ଥାନମାନ ରହିଛି ସେହିସବୁ ଜାଗାର ବାସିନ୍ଦାମାନଙ୍କ ଶାରୀରିକ ଗଠନ କିପରି ଥିଲା, ତାହା ମଧ୍ୟ ଅନୁସନ୍ଧାନସାପେକ୍ଷ ।

ସେ ପୁଣି ପ୍ରଶ୍ନ କଲେ ‘‘ଜାତି (caste) ବୋଇଲେ କ’ଣ ?’’ ଜାତି ସମ୍ପର୍କରେ ତଥ୍ୟ ସଂଗ୍ରହ କରିବା ପାଇଁ ମାନବ-ଇତିହାସ (ethno-historical) ଅନୁଧ୍ୟାନ ମଧ୍ୟ

ଅପରିହାର୍ଯ୍ୟ । ନିଜ ପ୍ରଶ୍ନଗୁଡ଼ିକର ଉତ୍ତର ପାଇବା ନିମନ୍ତେ ସେ ପୁରାନୃତତ୍ତ୍ୱ (paleo anthropology), ଭାରତବିଦ୍ୟା (Indology), ଦେଶର ପୁରାତନ ମହାକାବ୍ୟ, ଜନଶ୍ରୁତି, ମୌଖିକ ଚଳଣି, ବିଭିନ୍ନ ଅଞ୍ଚଳର ଅଧିବାସୀମାନଙ୍କ ସାମାଜିକ ଆଚାର ଆଚରଣ ତଥା ବିଭିନ୍ନ ଭାଷା ଇତ୍ୟାଦି ବହୁବିଧ ଶାଖା ସମ୍ବନ୍ଧରେ ଅନୁଧାନ ଆରମ୍ଭ କରିଦେଲେ ।

ଭାରତର ବିଭିନ୍ନ ଅଞ୍ଚଳ ବୁଲି ଅବ୍ୟବସ୍ଥିତ ଭାବରେ ତଥ୍ୟ ସଂଗ୍ରହରେ ବ୍ରତୀ ନ ରହି ଦେଶର କୌଣସି ସୀମିତ ଅଞ୍ଚଳରେ ଅନୁଧାନ କରିବା ଅଧିକ ଫଳପ୍ରସୂ ହୋଇପାରିବ ବୋଲି ସେ ଚିନ୍ତା କଲେ । ଏପରି କରିବା ଦ୍ୱାରା ସେହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଜାତିଗତ ଏବଂ ସାଂସ୍କୃତିକ ପାର୍ଥକ୍ୟ ବିଷୟରେ ଅଧିକ ବିଶ୍ୱସନୀୟ ତଥ୍ୟ ଆହରଣ କରିହେବ । ଆଦିମ ଗୋଷ୍ଠୀ କି ଆଦିମ ସଂପ୍ରଦାୟ ବିଷୟରେ ତଥ୍ୟ ଆହରଣ କରିବାର ସପକ୍ଷରେ ନ ଥିଲେ ସେ ।

ଉଦାହରଣ ଦେଇ ସେ ଯୁକ୍ତି କଲେ ଯେ ମହାରାଷ୍ଟ୍ରୀୟ ବ୍ରାହ୍ମଣମାନଙ୍କ ମଧ୍ୟରୁ ଶହେ ଜଣଙ୍କୁ ନିର୍ବାଚନ କରି ସେମାନଙ୍କ ଉପରେ ନୃତାତ୍ତ୍ୱିକ ଅନୁଧାନ କଲେ ମହାରାଷ୍ଟ୍ରରେ ଥିବା ତଥା ନିଜ ନିଜ ମଧ୍ୟରେ ବିବାହକୁ ସୀମିତ ରଖିଥିବା ୧୨ଟି ବ୍ରାହ୍ମଣ ଉପଜାତିଙ୍କ ବିଷୟରେ ବାସ୍ତବ ତଥ୍ୟ ଆହରଣ କରି ହେବ ନାହିଁ । ଯେପରିକି ମହାରାଷ୍ଟ୍ରର ଦୁଇ ପ୍ରଧାନ ବ୍ରାହ୍ମଣ ଉପଜାତି ହେଉଛନ୍ତି 'ଚିତ୍‌ପବନ' ଏବଂ 'ଦେଶସ୍ଥ ଋଗ୍‌ବେଦୀ' । ଉଭୟ ଗୋଷ୍ଠୀ ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ । ଦେଶସ୍ଥ ଋଗ୍‌ବେଦୀ ବ୍ରାହ୍ମଣମାନେ ମରହଟ୍ଟାମାନଙ୍କର ଅଧିକ ନିକଟବର୍ତ୍ତୀ । ତେଣୁ ତାଙ୍କର ମତ ଥିଲା ଭାରତୀୟମାନଙ୍କ କ୍ଷେତ୍ରରେ ନୃତତ୍ତ୍ୱ ସମ୍ପର୍କିତ ଅନୁଧାନ ପାଇ ନିର୍ଦ୍ଦିଷ୍ଟ ଜାତି ଉପରେ ଗୁରୁତ୍ୱ ଦେଇ ଜାତି ସଂଗଠନ ବା ଜାତି ଶ୍ରେଣୀ ବିଭାଗକୁ ଗୁରୁତ୍ୱ ପ୍ରଦାନ ନକରିବା ହିଁ ଯୁକ୍ତିଯୁକ୍ତ । ନୃତତ୍ତ୍ୱ ଅନୁଧାନ ପାଇଁ ଜାତିକୁ ଏକ ଏକକ ବା ଗବେଷଣା ସାଧନ ରୂପେ ବିଚାରକୁ ନେବା ଉପରେ ସେ ଯେଉଁ ସିଦ୍ଧାନ୍ତ ଗ୍ରହଣ କରିଥିଲେ, ତାହା ଭାରତୀୟ ନୃତତ୍ତ୍ୱରେ ଥିଲା ଏକ ବୈପ୍ଳବିକ ଅବଦାନ ।

ଋଗ୍‌ବେଦ, ଅଥର୍ବବେଦ ଏବଂ ମହାଭାରତରେ ଉଲ୍ଲେଖ ଥିବା ବିଭିନ୍ନ ଜାତିର ଶ୍ରେଣୀବିଭାଗ, ସେମାନଙ୍କ ଗୋଷ୍ଠୀରେ ରହିଥିବା ପାରସ୍ପରିକ ତଥା ପାରିବାରିକ ସାମାଜିକ ସଂପର୍କ, ବିବାହ ସମ୍ବନ୍ଧ ଇତ୍ୟାଦି ବିଷୟରେ ମଧ୍ୟ ଗଭୀର ଅନୁଧାନ କରିଥିଲେ ଇରାବତୀ । ଏଥିପାଇଁ ଗୁଜରାଟ, କର୍ଣ୍ଣାଟକ, ଓଡ଼ିଶା, କେରଳ, ତାମିଲନାଡୁ ଏବଂ ଉତ୍ତରପ୍ରଦେଶରୁ ସେ ତଥ୍ୟମାନ ସଂଗ୍ରହ କରିଥିଲେ । ସେହି ଅନୁଧାନର ଫଳାଫଳକୁ 'କିନ୍‌ସିପ୍ ଅର୍ଗାନାଇଜେସନ୍ ଇନ୍ ଇଣ୍ଡିଆ' (Kinship Organisation in India) ନାମକ

ପୁସ୍ତକରେ ସନ୍ନିବେଶିତ କରିଯାଇଛନ୍ତି ସେ (୧୯୫୩) । ଏହି ପୁସ୍ତକଟିର ଏକାଧିକ ସଂସ୍କରଣ ପ୍ରକାଶିତ ହୋଇସାରିଲାଣି । ସାଂସ୍କୃତିକ ନୃତତ୍ତ୍ୱ ସମ୍ପର୍କରେ ଗବେଷଣା କରୁଥିବା ନୃତତ୍ତ୍ୱବିତ୍‌ମାନଙ୍କ ପାଇଁ ଏହି ପୁସ୍ତକଟି ଖୁବ୍ ଉପାଦେୟ ଭାବରେ ସ୍ୱୀକୃତ ।

ନିଜର ମୌଳିକ ଗବେଷଣାପାଇଁ ଇରାବତୀ ଦେଶ ବିଦେଶରେ ନିଜର ସ୍ୱତନ୍ତ୍ର ପରିଚିତି ପ୍ରତିଷ୍ଠା କରିଯାଇଛନ୍ତି । ଭାରତୀୟ ବିଜ୍ଞାନ କଂଗ୍ରେସର ନୃତତ୍ତ୍ୱ ବିଭାଗରେ ୧୯୫୭ ମସିହାର ଅଧିବେଶନରେ ସଭାପତିତ୍ୱ କରିବା ଇରାବତୀଙ୍କ ଗବେଷଣାକୃତିର ଅମ୍ଳାନ ସ୍ୱାକ୍ଷର । ଲଣ୍ଡନ ବିଶ୍ୱବିଦ୍ୟାଳୟର ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ ଆଫ୍ରିକାନ୍ ଷ୍ଟଡ଼ିଜ୍ ବିଭାଗରେ ତାଙ୍କୁ ଅର୍ପଣ କରାଯାଇଥିଲା ଅଧ୍ୟାପକ ପଦବୀ ।

ଇରାବତୀ ରଚନା କରିଛନ୍ତି କେତେକ ଉପାଦେୟ ପୁସ୍ତକ । ସେଗୁଡ଼ିକ ମଧ୍ୟରେ 'ହିନ୍ଦୁ ସୋସାଇଟି, ଆନ୍ ଇଣ୍ଟରପ୍ରିଟେସନ୍' (Hindu Society, an Interpretation) ବା 'ହିନ୍ଦୁ ସମାଜ, ଏକ ବିଶ୍ଳେଷଣ'ରେ ଭାରତର ଜାତିପ୍ରଥା ସଂପର୍କରେ ପୁଙ୍ଖାନୁପୁଙ୍ଖ ବ୍ୟାଖ୍ୟା ଲିପିବଦ୍ଧ ହୋଇଛି; 'କିନ୍‌ସିପ୍ ଅର୍ଗାନାଇଜେସନ୍ ଇନ୍ ଇଣ୍ଡିଆ'ରେ ସନ୍ନିବେଶିତ ହୋଇଛି ଭାରତୀୟମାନଙ୍କ ମଧ୍ୟରେ ପରିଲକ୍ଷିତ ହେଉଥିବା ସାମାଜିକ ସମ୍ବନ୍ଧ । 'ମହାରାଷ୍ଟ୍ର, ଲ୍ୟାଣ୍ଡ ଏଣ୍ଡ ପିପଲ୍' (Maharashtra, Land and People) ବା 'ମହାରାଷ୍ଟ୍ର, ରାଜ୍ୟ ଓ ରାଜ୍ୟବାସୀ' ମଧ୍ୟ ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ପୁସ୍ତକ । ତାଙ୍କ ଦ୍ୱାରା ପ୍ରଣୀତ 'ଯୁଗାନ୍ତ' ମରାଠୀ ଭାଷାରେ ଲିଖିତ ଏକ ସମୀକ୍ଷାଗ୍ରନ୍ଥ । 'ମହାଭାରତ' ଶୀର୍ଷକ ପୁସ୍ତକ ରଚନା ପାଇଁ ତାଙ୍କୁ ପ୍ରଦାନ କରାଯାଇଥିଲା ସାହିତ୍ୟ ଏକାଡ଼େମୀ ପୁରସ୍କାର ।

ଇରାବତୀଙ୍କ ଏହି ଲେଖାରେ ରକ୍ଷଣଶୀଳତା ବିରୋଧରେ ଶାଣିତ ସମାଲୋଚନା ପରିଲକ୍ଷିତ ହୋଇଥାଏ । ପରମ୍ପରାକୁ ସମ୍ମାନ ଦେଉଥିବା ବ୍ୟକ୍ତିମାନଙ୍କ ପ୍ରତି ତାହା ଅସହ୍ୟ ହେଉଥିଲେ ମଧ୍ୟ ସେଗୁଡ଼ିକ ପାଠକ ମହଲରେ ଖୁବ୍ ଆଦୃତ । 'ମହାଭାରତ' ପୁସ୍ତକଟି ଇଂରାଜି ସମେତ ଅନେକ ଭାରତୀୟ ଭାଷାରେ ଅନୂଦିତ ହୋଇଛି ।

୧୯୭୦ ମସିହା ଅଗଷ୍ଟ ୧୧ ତାରିଖରେ ନିଦ୍ରାବସ୍ଥାରେ ହିଁ ଇରାବତୀ କାର୍ଭେଙ୍କର ପରଲୋକ ହୋଇଗଲା । ମୃତ୍ୟୁ ବେଳକୁ ତାଙ୍କୁ ହୋଇଥିଲା ମାତ୍ର ୬୫ ବର୍ଷ । ଇରାବତୀଙ୍କ ଜୀବନରେ ବୌଦ୍ଧିକ ସାଧୁତା, ପ୍ରଚଣ୍ଡ ମାନସିକ ଶକ୍ତି ଓ ସମାଜର ସବୁଶ୍ରେଣୀର ବ୍ୟକ୍ତିଙ୍କ ସହ ଅନ୍ତରଙ୍ଗ ସମ୍ପର୍କ ସ୍ଥାପନ କରିବାର ସାମର୍ଥ୍ୟର ଅସାଧାରଣ ସମନ୍ୱୟ ଘଟିଥିଲା । ଶିକ୍ଷା ଓ ସାହିତ୍ୟ, ଏହି ଉଭୟ କ୍ଷେତ୍ରରେ ଇରାବତୀଙ୍କ ଉତ୍କର୍ଷ ଅବିସ୍ମରଣୀୟ ।





# ରାମଦେଓ ମିଶ୍ର

**ପ୍ରଫେସର ମାଧବ ଚନ୍ଦ୍ର ଦାଶ**

ଡକ୍ଟର ରାମଦେଓ ମିଶ୍ର ବନାରସ ବିଶ୍ୱବିଦ୍ୟାଳୟରେ ଉଭିଦ ବିଜ୍ଞାନ ବିଭାଗରେ ଏମେରିଟସ୍ ପ୍ରଫେସର ଥିବା ସମୟରେ ୧୯୭୪ ମସିହା ଫେବ୍ରୁଆରୀ ମାସରେ ପ୍ରାୟ ୬ ଦିନ ବ୍ୟାପୀ ପରିବେଶ ବିଜ୍ଞାନ ସମ୍ବନ୍ଧୀୟ ଗୋଟିଏ ଆର୍ନ୍ତଜାତିକ ସମ୍ମିଳନୀ ଆନ୍ତର୍ଜାତିକ ଜୀବବିଜ୍ଞାନ ପ୍ରୋଗାମ୍ (International Biological Programme) ଆନୁକୂଲ୍ୟରେ କରାଇଥିଲେ । ସେହି ସମୟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଜୀବବିଜ୍ଞାନ ବିଭାଗରେ ରିଡ଼ର ଓ ବିଭାଗର ମୁଖ୍ୟଭାବେ ଏହି ଲେଖକ କାର୍ଯ୍ୟ କରୁଥିଲେ । ମୃତ୍ତିକାରେ ରହୁଥିବା ଜିଆଙ୍କର ମାଧମିକ ଉତ୍ପାଦିକା ଶକ୍ତି (Secondary Productivity) ଏବଂ ଏନ୍ରଜେଟିକ୍ସ ସମ୍ବନ୍ଧରେ ଗୋଟିଏ ଗବେଷଣା ଆଧାରିତ ପ୍ରବନ୍ଧ ସମ୍ମିଳନୀରେ ଉପସ୍ଥାପନା କରିବା ପାଇଁ ପ୍ରଫେସର ମିଶ୍ର ଏହି ଲେଖକଙ୍କୁ ନିମନ୍ତ୍ରଣ କରିଥିଲେ । ସେହି ସମ୍ମିଳନୀରେ ତାଙ୍କ ସାଙ୍ଗେ ପ୍ରଥମେ ସାକ୍ଷାତ୍ ହେଲା । ଅବଶ୍ୟ ତା' ଆଗରୁ ତାଙ୍କ ସାଙ୍ଗେ ପତ୍ରାଳାପ ଥିଲା । ଡକ୍ଟର ମିଶ୍ର ଓ ତାଙ୍କର ସହକର୍ମୀମାନେ ଲେଖକଙ୍କ ପ୍ରବନ୍ଧଟିକୁ ପସନ୍ଦ କଲେ ଏବଂ ଆର୍ନ୍ତଜାତିକ ପତ୍ରିକା 'ଟ୍ରପିକାଲ ଇକୋଲଜି'ରେ ପ୍ରବନ୍ଧଟିକୁ ପ୍ରକାଶ କଲେ ।

ଲେଖକ ୧୯୭୬ ମସିହାରେ ପ୍ରଫେସର ହେଲାପରେ, ଡକ୍ଟର ମିଶ୍ର ତାଙ୍କର ଜଣେ ଛାତ୍ରର ଡକ୍ଟରେଟ୍ ଥେସିସ୍‌ର ପରୀକ୍ଷକ ରୂପେ ଲେଖକଙ୍କୁ ନିଯୁକ୍ତ କରିଥିଲେ । ସ୍ୱର୍ଗତ ପ୍ରଫେସର ଗଦାଧର ମିଶ୍ରଙ୍କ ତତ୍ତ୍ୱାବଧାନରେ ଡକ୍ଟରେଟ୍ ଥେସିସ୍‌ଟିକୁ ଲରମ୍ବା ମହାବିଦ୍ୟାଳୟର ଶ୍ରୀ ମୋହିନୀ ମୋହନ ମାଇତି ୧୯୮୧ ମସିହାରେ ଦାଖଲ କରିଥିଲେ ।

ଥେସିସ୍‌ର ମୌଖିକ ସାକ୍ଷାତ୍‌କାର ପାଇଁ ଡକ୍ଟର ରାମଦେଓ ମିଶ୍ର ଏବଂ ତାଙ୍କ ସାନଭାଇ ଡକ୍ଟର କେ. ସି. ମିଶ୍ର ଓ ଜବଲପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ଡି. ପି. ଅଗରୱାଲ ଜ୍ୟୋତିବିହାର ଆସିଥିଲେ ୧୯୮୧ ମସିହାରେ । ପ୍ରଫେସର ଗଦାଧର ମିଶ୍ର

ଏହି ମୌଖିକ ପରୀକ୍ଷା ଆୟୋଜନ କରିବାର କାର୍ଯ୍ୟ ଲେଖକଙ୍କ ଉପରେ ନ୍ୟସ୍ତ କରିଥିଲେ । ଲେଖକ ଏହି ସଂକ୍ରାନ୍ତରେ ପ୍ରଫେସର ମିଶ୍ରଙ୍କ ସହ ବନାରସ ଠିକଣାରେ ପତ୍ରାଳାପ କରିଥିଲା ଏବଂ ଜ୍ୟୋତିବିହାରରେ ଥିବା ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ମୌଖିକ ପରୀକ୍ଷାର ବନ୍ଦୋବସ୍ତ କରାଇଥିଲା । ପ୍ରଫେସର ରାମଦେଓ ମିଶ୍ରଙ୍କ ତତ୍ତ୍ୱାବଧାନରେ ଯେଉଁ ୬୦ ଜଣ ଡକ୍ଟରେଟ ପାଇଛନ୍ତି, ତାଙ୍କ ଭିତରୁ ଅନେକକୁ ଲେଖକ ବ୍ୟକ୍ତିଗତ ଭାବରେ ଜାଣେ ଏବଂ ତାଙ୍କ ଗବେଷଣା ଗୋଷ୍ଠୀର କାର୍ଯ୍ୟ ସହିତ ମଧ ପରିଚିତ ।

ଡକ୍ଟର ରାମଦେଓ ମିଶ୍ର ପରିବେଶ ବିଜ୍ଞାନ କ୍ଷେତ୍ରରେ ଜଣେ ଅନନ୍ୟ ପ୍ରତିଭା ଥିଲେ । ବନାରସ ଏବଂ ସାଗର ବିଶ୍ୱବିଦ୍ୟାଳୟରେ ଉଦ୍ଭିଦ-ପରିବେଶ ବିଜ୍ଞାନ ଉପରେ ଗବେଷଣା କରି ଆର୍ନ୍ତଜାତିକ ଖ୍ୟାତି ଅର୍ଜନ କରିଥିଲେ । ସେଇଥିପାଇଁ ତାଙ୍କୁ 'ଭାରତୀୟ ପରିବେଶ ବିଜ୍ଞାନର ପିତା' ବୋଲି ଧରାଯାଏ । ଏହି ଅନନ୍ୟ ପ୍ରତିଭା ୧୯୦୮ ମସିହା ଅଗଷ୍ଟ ୨୬ ତାରିଖରେ ଉତ୍ତର ପ୍ରଦେଶର ଯାଆନ୍‌ପୁର ଜିଲ୍ଲାର ଗୋଟିଏ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟଶିକ୍ଷା ପରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ସ୍ନାତକ ଓ ଏମ୍.ଏସ୍‌ସି. ଉଦ୍ଭିଦ ବିଜ୍ଞାନରେ କୃତିତ୍ୱର ସହ ପାସ୍ କରି ସେହି ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବେ କାର୍ଯ୍ୟ ଆରମ୍ଭ କଲେ । ତା'ପରେ ଉଚ୍ଚଶିକ୍ଷା ପାଇଁ ଛୁଟିନେଇ ବିଲାତର ଲିଡ୍‌ସ ବିଶ୍ୱବିଦ୍ୟାଳୟରେ ପରିବେଶ ବିଜ୍ଞାନୀ ପ୍ରଫେସର ପିଅରସଲଙ୍କ ତତ୍ତ୍ୱାବଧାନରେ ୧୯୩୮ ମସିହାରେ ଡକ୍ଟରେଟ୍ ଉପାଧି ପାଇଲେ । ତାଙ୍କ ଡକ୍ଟରେଟ୍ ସନ୍ଦର୍ଭର ବିଷୟବସ୍ତୁ ଥିଲା "ବିଲାତର ହ୍ରଦଗୁଡ଼ିକରେ ମାକୋଫାଇଟ୍‌ର ବୃଦ୍ଧି ଓ ବିସ୍ତାର ଉପରେ ପରିବେଶର ତଥା ମୃତ୍ତିକାରେ ରହିଥିବା ବିଭିନ୍ନ କାରକଗୁଡ଼ିକର ପ୍ରଭାବ ଏବଂ ସେଗୁଡ଼ିକର ଉପାଦେୟତା ।" ସେହି ଗବେଷଣା ମୌଳିକ ଏବଂ ଉଚ୍ଚକୋଟିର ଥିଲା । କାରଣ ବର୍ତ୍ତମାନ ମଧ ସେ ସମ୍ବନ୍ଧରେ ଯେଉଁ ବିଜ୍ଞାନୀ ବିଲାତର ହ୍ରଦମାନଙ୍କରେ ପ୍ରଦୂଷଣ ସମ୍ବନ୍ଧିତ ଗବେଷଣା କରୁଛନ୍ତି, ପ୍ରଫେସର ମିଶ୍ରଙ୍କର ଗବେଷଣାକୁ ଉଦାହରଣ ଦେଉଛନ୍ତି ।

ବିଲାତରୁ ବନାରସ ବିଶ୍ୱବିଦ୍ୟାଳୟକୁ ଫେରିଆସି ୧୯୩୮ରୁ ୧୯୪୬ ମସିହା ଭିତରେ ଗଙ୍ଗାନଦୀ ଉପତ୍ୟକାରେ ଉଦ୍ଭିଦମାନଙ୍କର ବୃଦ୍ଧି ଓ ବିସ୍ତାର ଉପରେ ବିସ୍ତୃତ ଗବେଷଣା କରିଥିଲେ । ଏହି ଗବେଷଣା ପାଇଁ ସେ ସାଗର ବିଶ୍ୱବିଦ୍ୟାଳୟରେ ରିଡ଼ର ଭାବେ ମନୋନୀତ ହୋଇଥିଲେ । ୧୯୪୬ ରୁ ୧୯୫୪ ମସିହା ପର୍ଯ୍ୟନ୍ତ ସେ ରିଡ଼ର ଓ ଉଦ୍ଭିଦ ବିଜ୍ଞାନ ବିଭାଗର ମୁଖ୍ୟଭାବେ ସାଗର ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରିଥିଲେ । ସେହି ସମୟରେ ସେ ମଧ ପ୍ରଦେଶର ତୃଣଭୂମିର ଉଦ୍ଭିଦମାନଙ୍କର ବୃଦ୍ଧି ଓ ବିସ୍ତାର

ସମ୍ବନ୍ଧରେ ଗବେଷଣା କରିଥିଲେ । ବନାରସ ଓ ସାଗରରେ ସେ ଅନେକ ଡକ୍ଟରେଟ୍ ଛାତ୍ରଙ୍କୁ ଦିଗଦର୍ଶନ ଦେଇଥିଲେ । ପରବର୍ତ୍ତୀ ସମୟରେ ତାଙ୍କ ଛାତ୍ରମାନେ ଗବେଷଣା କରି ଖ୍ୟାତି ଅର୍ଜନ କରିଛନ୍ତି ।

୧୯୫୪ ମସିହାରେ ଡକ୍ଟର ମିଶ୍ର ବନାରସ ବିଶ୍ୱବିଦ୍ୟାଳୟକୁ ପ୍ରଫେସର ଭାବେ ଫେରି ଆସିଥିଲେ । ବନାରସକୁ ପ୍ରଫେସର ହୋଇ ଆସିବାରେ ପ୍ରଫେସର ପ୍ରାଣକୃଷ୍ଣ ପରିଜା ତାଙ୍କୁ ପ୍ରେରଣା ଦେଇଥିଲେ । ପ୍ରଫେସର ମିଶ୍ରଙ୍କ ଗବେଷଣାରେ ପ୍ରଫେସର ପରିଜା ଏତେ ଖୁସି ହୋଇଥିଲେ ଯେ ତାଙ୍କୁ ବନାରସକୁ ଆଣିବାରେ ଖୁବ୍ ସାହାଯ୍ୟ କରିଥିଲେ । ଡକ୍ଟର ମିଶ୍ର ପ୍ରଫେସର ପରିଜାଙ୍କୁ ଗୁରୁତୁଲ୍ୟ ସମ୍ମାନ କରୁଥିଲେ ।

ବନାରସ ବିଶ୍ୱବିଦ୍ୟାଳୟକୁ ୧୯୫୪ ରେ ଫେରିଲାପରେ ୧୯୯୯ ମସିହା ପର୍ଯ୍ୟନ୍ତ ସେ MAB (Man and Biosphere) ବା ମଣିଷ ଏବଂ ଜୈବମଣ୍ଡଳ ଓ IBP (International Biological Programme) ବା ଆନ୍ତର୍ଜାତିକ ଜୈବିକ କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ ହୋଇ ଉତ୍ତର ଭାରତରେ ଉଦ୍ଭିଦମାନଙ୍କର ବୃଦ୍ଧି ଓ ବିସ୍ତାର ଏବଂ ଗ୍ରାମ୍ୟ ପରିସଂସ୍ଥା ଉପରେ ଗବେଷଣା ଚାଲୁ ରଖିଲେ ଏବଂ ଉଦ୍ଭିଦ ବିଜ୍ଞାନ ବିଭାଗରେ ଏକ ଉଚ୍ଚକୋଟିର ଗବେଷଣା ଅନୁଷ୍ଠାନ ସ୍ଥାପନ କଲେ । ଭାରତ ଓ ଭାରତ ବାହାରେ ତାଙ୍କର ଅନେକ ଛାତ୍ର ପ୍ରଫେସର ଓ ଅନ୍ୟ ପଦବୀରେ ଅଛନ୍ତି । ପ୍ରଫେସର ମିଶ୍ର ୧୯୭୨ ମସିହାରେ UNESCO ର MAB ପ୍ରୋଗାମ୍‌ରେ ଉପାଧ୍ୟକ୍ଷ ଥିଲେ । ୧୯୬୭ ରୁ ୧୯୭୨ ଭିତରେ International Association of Ecology ସଂସ୍ଥା ଗଠନ କରିବାରେ ଲାଗି ପଡ଼ିଥିଲେ ଏବଂ INTECOL Boardର ସଭ୍ୟ ଥିଲେ । ସେ ଭାରତକୁ UNESCO ର MAB ପ୍ରୋଗ୍ରାମରେ ପ୍ରତିନିଧିତ୍ୱ କରିଥିଲେ । ଭାରତ ସରକାରଙ୍କ ଦ୍ୱାରା ଗଠିତ ପରିବେଶ ଯୋଜନା ଓ ସମନ୍ୱୟ ସମ୍ବନ୍ଧୀୟ ଜାତୀୟ କମିଟିର ସଭ୍ୟ ଥିଲେ । ତାହାଛଡ଼ା UNର ଷ୍ଟକ୍‌ହୋଲ୍‌ମ୍ କନ୍‌ଫରେନ୍‌ସ ପାଇଁ ଭାରତର ଚିଠା ପ୍ରସ୍ତୁତ କରିବା ନିମନ୍ତେ ଯେଉଁ କମିଟି ପୀତାମ୍ବର ପନ୍ଥଙ୍କ ଅଧ୍ୟକ୍ଷତାରେ ଗଠିତ ହୋଇଥିଲା, ସେଥିରେ ସଭ୍ୟ ଥିଲେ ।

ପ୍ରଫେସର ମିଶ୍ର ଓ ବିଲାତରେ ରହୁଥିବା ପ୍ରଫେସର ଜି.ଏସ୍. ପୁରୀ (ଦୁଇଜଣଯାକ ପ୍ରଫେସର ପିଅରସଲ୍‌ଙ୍କ ଛାତ୍ର) ଏବଂ ଆମେରିକାର ଡକ୍ଟର ଏଫ୍. ଆର୍. ଫୋସ୍‌ବର୍ଗଙ୍କ ଉଦ୍ୟମକ୍ରମେ ୧୯୬୦ ମସିହାରେ ଗଠନ କରାଗଲା ଅନ୍ତର୍ଜାତୀୟ Society of Tropical Ecology । ଏହି ସଂସ୍ଥା ତରଫରୁ ଆନ୍ତର୍ଜାତିକ ଗବେଷଣା ପତ୍ରିକା 'ଟ୍ରପିକାଲ ଇକୋଲଜି' ନିୟମିତ ଭାବେ ପ୍ରକାଶିତ ହେଲା । ଏବେ ଏହି ପତ୍ରିକା ଖୁବ୍ ଉଚ୍ଚକୋଟିର ପ୍ରବନ୍ଧ ପ୍ରକାଶ କରୁଛି । ୧୯୭୪ ମସିହାରେ ପ୍ରଫେସର ମିଶ୍ର ଓ ତାଙ୍କର ପ୍ରାକ୍ତନ ଛାତ୍ର ଓ

ସହଯୋଗୀମାନେ ମିଶି ଜାତୀୟ ଇକୋଲଜି ସଂସ୍ଥା ଗଠନ କଲେ । ଏହି ସଂସ୍ଥା ତରଫରୁ ଅନ୍ତର୍ଜାତୀୟ ଇକୋଲଜି ଓ ପରିବେଶ ବିଜ୍ଞାନ ପତ୍ରିକା ପ୍ରକାଶିତ ହେଉଛି । ଏହି ୩୫ ବର୍ଷ ମଧ୍ୟରେ ଏହି ପତ୍ରିକାଟି ଅନ୍ତର୍ଜାତୀୟ ଖ୍ୟାତି ଅର୍ଜନ କରିଛି । ପ୍ରଫେସର ମିଶ୍ର ଏହି ପତ୍ରିକାର ଆଭିମୁଖ୍ୟ ''ରକ୍ଷୟେ ପ୍ରକୃତିଂ ପାନ୍ତୁ ଲୋକାଃ'' (ଜନସାଧାରଣ ପ୍ରକୃତିର ପାଳନ ଓ ରକ୍ଷଣ କରନ୍ତୁ) ରଖିଛନ୍ତି ।

ତାଙ୍କର ଗବେଷଣା ପାଇଁ ପ୍ରଫେସର ମିଶ୍ର ଭାରତୀୟ ଉଦ୍ଭିଦ ବିଜ୍ଞାନ ସୋସାଇଟିର ବୀରବଲ୍ ସାହାନୀ ସ୍ୱର୍ଣ୍ଣ ପଦକ ୧୯୬୬ ରେ ଏବଂ ମଧ୍ୟପ୍ରଦେଶ ବିଜ୍ଞାନ ଆକାଡ଼େମିର ଜବାହାରଲାଲ ନେହେରୁ ସ୍ୱର୍ଣ୍ଣପଦକ ୧୯୮୪ରେ ପାଇଥିଲେ । ସେ ମଧ୍ୟ ୧୯୮୪ରେ ପାଇଥିଲେ ସଂଜୟଗାନ୍ଧୀ ପରିବେଶ ସମ୍ମାନ । ପ୍ରଫେସର ମିଶ୍ର ୧୫୦ରୁ ଊର୍ଦ୍ଧ୍ୱ ସଂଖ୍ୟକ ଗବେଷଣା ଭିତ୍ତିକ ନିବନ୍ଧ ଓ ୧୦ଟି ବହି ଲେଖିଛନ୍ତି । ଭାରତୀୟ ଜାତୀୟ ବିଜ୍ଞାନ ଆକାଡ଼େମିର ଏବଂ World Academy of Arts & Scienceର ଫେଲୋସିପ୍ ପାଇଥିଲେ ସେ । ଭାରତୀୟ ବିଜ୍ଞାନ କଂଗ୍ରେସର ଉଦ୍ଭିଦ ବିଜ୍ଞାନ ବିଭାଗର ସେ ସଭାପତି ମଧ୍ୟ ଥିଲେ ।

ସେ ୧୯୬୮ ମସିହାରେ ୬୦ ବର୍ଷ ବୟସରେ କାର୍ଯ୍ୟରୁ ଅବସର ନେଲାପରେ ମଧ୍ୟ ବନାରସ ବିଶ୍ୱବିଦ୍ୟାଳୟରେ ୧୯୯୯ ମସିହା ପର୍ଯ୍ୟନ୍ତ ଏମେରିଟ୍ସ ପ୍ରଫେସର ଥିଲେ । ତାଙ୍କର ୨୫ ଜୁନ ୧୯୯୯ ରେ ମୃତ୍ୟୁ ହୋଇଥିଲା । ପ୍ରଫେସର ମିଶ୍ରଙ୍କର ପ୍ରାକ୍ତନ ଛାତ୍ରମାନେ ତାଙ୍କର ପ୍ରଥମ ଜନ୍ମ ଶତବାର୍ଷିକୀ ଦିଲ୍ଲୀରେ ୨୬ ଅଗଷ୍ଟ ୨୦୦୮ରେ ପାଳନ କରିଥିଲେ । ପ୍ରଥମ 'ପ୍ରଫେସର ମିଶ୍ର ମେମୋରିଆଲ ଭାଷଣ' ଦେଇଥିଲେ ପ୍ରଫେସର ମାଧବ ଗାଡ଼ଗିଲ । ତାଙ୍କ ଭାଷଣ ଅନ୍ତର୍ଜାତୀୟ ଇକୋଲୋଜି ଓ ପରିବେଶ ବିଜ୍ଞାନ ପତ୍ରିକାରେ ପ୍ରକାଶିତ ହୋଇଅଛି । ଭାରତ ସରକାରଙ୍କ ଆୟକର ବିଭାଗ ପ୍ରଫେସର ମିଶ୍ରଙ୍କ ପାଇଁ ଗଠିତ ମେମୋରିଆଲ୍ ପାଣ୍ଠିକୁ ଦାନ କଲେ ଦାନ ଅର୍ଥ ଉପରେ ଆୟକର ଛାଡ଼ କରିଛନ୍ତି । ପ୍ରଫେସର ମିଶ୍ର ତାଙ୍କର ଅବଦାନ ପାଇଁ ଭାରତୀୟ ପରିବେଶ ବିଜ୍ଞାନୀ ଏବଂ ଉଦ୍ଭିଦ ବିଜ୍ଞାନୀମାନଙ୍କ ପାଖରେ ଅମର ରହିବେ ।

''ନ ହି ଜ୍ଞାନେନ ସଦୃଶଂ ପବିତ୍ରମ୍ ଇହ ବିଦ୍ୟତେ ।''

ଶ୍ରୀମଦ୍‌ଭଗବଦ୍ ଗୀତା

ଅର୍ଥାତ୍, 'ଜ୍ଞାନ ବ୍ୟତୀତ ଅନ୍ୟକିଛି ଅଧିକ ପବିତ୍ର ବା ଶୁଦ୍ଧ ନୁହେଁ ।'



# ଲେଖକଲେଖିକାଙ୍କ ପରିଚୟ

**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
'ଅଭୀପ୍‌ସା', ସେକ୍ଟର - ୬, ପ୍ଲଟ ନଂ - ୧୧୩୧,
ଅଭିନବ ବିଡ଼ାନାସୀ, କଟକ ।

**ଇଂ. ବ୍ରଜେନ୍ଦ୍ର ନାରାୟଣ ରାଉତରାୟ**
ନିଉରାଉସପାଟଣା, କଟକ ।

**ଡକ୍ଟର ରଜନୀକାନ୍ତ ସାମଲ**
ଅବସରପ୍ରାପ୍ତ ଅଧ୍ୟକ୍ଷ, ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ ।

**ସ୍ୱର୍ଗତ ପ୍ରଫେସର ଡାକ୍ତର ଗୋପୀନାଥ ପ୍ରସାଦ ମହାନ୍ତି**
ଅବସରପ୍ରାପ୍ତ ନିର୍ଦ୍ଦେଶକ, ମେଡ଼ିକାଲ୍ ଶିକ୍ଷା ଓ ତାଲିମ ବିଭାଗ, ଓଡ଼ିଶା, ଭୁବନେଶ୍ୱର ।

**ଡକ୍ଟର ପ୍ରହ୍ଲାଦ ଚନ୍ଦ୍ର ନାୟକ**
ଅବସରପ୍ରାପ୍ତ ଅଧ୍ୟକ୍ଷ, ଧରଣୀଧର ସ୍ୱୟଂଶାସିତ ମହାବିଦ୍ୟାଳୟ, କେନ୍ଦୁଝର ।

**ଡାକ୍ତର ପ୍ରତିଭା ସ୍ୱାଇଁ**
'ଅଭୀପ୍‌ସା', ସେକ୍ଟର - ୬, ପ୍ଲଟ ନଂ - ୧୧୩୧,
ଅଭିନବ ବିଡ଼ାନାସୀ, କଟକ ।

**ପ୍ରଫେସର ଡାକ୍ତର ବାସୁଦେବ କର**
ଅବସରପ୍ରାପ୍ତ ଅଧ୍ୟକ୍ଷ,
ଶ୍ରୀରାମଚନ୍ଦ୍ରଭଂଜ ଚିକିତ୍ସା ମହାବିଦ୍ୟାଳୟ, କଟକ ।

**ପ୍ରଫେସର ଡକ୍ଟର ଅନିଲ କୁମାର ପାଲ**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଭୂତତ୍ତ୍ୱ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

**ପ୍ରଫେସର ଡାକ୍ତର ଶଶୀନାରାୟଣ ମହାପାତ୍ର**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଫାର୍ମାକୋଲୋଜି ବିଭାଗ
ଇନ୍‌ଷ୍ଟିଚିଉଟ୍ ଅଫ୍ ମେଡ଼ିକାଲ ସାଇନ୍‌ସେସ୍ ଆଣ୍ଡ୍ ସମ୍ ହସ୍‌ପିଟାଲ, ଭୁବନେଶ୍ୱର ।

**ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ
ରେଭେନ୍‌ସା ମହାବିଦ୍ୟାଳୟ, କଟକ ।

**ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସିଂହ**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ
ରେଭେନ୍‌ସା ମହାବିଦ୍ୟାଳୟ, କଟକ ।

**ଶ୍ରୀମତୀ କାଦମ୍ବିନୀ ଶତପଥୀ**
ଅବସରପ୍ରାପ୍ତ ପ୍ରଧାନ ଶିକ୍ଷିକା,
ଇମର୍ତ୍ତିଦେବୀ ବାଳିକା ଉଚ୍ଚବିଦ୍ୟାଳୟ, କଟକ ।

**ସ୍ୱର୍ଗତ ପ୍ରଫେସର ଡକ୍ଟର ବିଦ୍ୟାଧର ପାଢ଼ୀ**
ଅବସରପ୍ରାପ୍ତ ଉଦ୍ଭିଦ ବିଜ୍ଞାନ୍ ମୁଖ୍ୟ ଅଧ୍ୟାପକ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

**ଇଞ୍ଜିନିୟର ଧୀରେନ୍ଦ୍ର କୁମାର ବିଶ୍ୱାଳ**
ଅବସରପ୍ରାପ୍ତ ନିର୍ବାହୀ ଯନ୍ତ୍ରୀ, ଜନସ୍ୱାସ୍ଥ୍ୟ ବିଭାଗ, କଟକ ଡିଭିଜନ୍, କଟକ ।

**ସ୍ୱର୍ଗତ ପ୍ରଫେସର ଡକ୍ଟର ହରିହର ପଟ୍ଟନାୟକ**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ,
ଉଦ୍ଭିଦବିଜ୍ଞାନ ବିଭାଗ ଓ ପୂର୍ବତନ କୁଳପତି
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଂଜବିହାର, ଗଞ୍ଜାମ ।

**ପ୍ରଫେସର ଡକ୍ଟର ମନମୋହନ ମହାନ୍ତି**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଭୂତତ୍ତ୍ୱ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

**ଡକ୍ଟର ଜ୍ୟୋତ୍ସ୍ନା ମହାପାତ୍ର**
ପ୍ରାଧ୍ୟାପିକା, ରସାୟନ ବିଜ୍ଞାନ ବିଭାଗ
ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ, ଭୁବନେଶ୍ୱର ।

**ଡକ୍ଟର ନାରାୟଣ ଚନ୍ଦ୍ର ପାଳ**

ପ୍ରାଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ

ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ ।

**ପ୍ରଫେସର ଡକ୍ଟର ପତିତପାବନ ମିଶ୍ର**

ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ପଦାର୍ଥ ବିଜ୍ଞାନ ବିଭାଗ

ରେଭେନ୍ସା ମହାବିଦ୍ୟାଳୟ, କଟକ ।

**ପ୍ରଫେସର ଡକ୍ଟର ବିଜୟ କୁମାର ପଟ୍ଟନାୟକ**

ଅବସରପ୍ରାପ୍ତ ଅଧ୍ୟକ୍ଷ, ବି.ଜେ.ବି. ମହାବିଦ୍ୟାଳୟ, ଭୁବନେଶ୍ୱର ।

**ସ୍ୱର୍ଗତ ପ୍ରଫେସର ଡକ୍ଟର ଗଦାଧର ମିଶ୍ର**

ଅବସରପ୍ରାପ୍ତ ପ୍ରଫେସର, ଉଦ୍ଭିଦବିଜ୍ଞାନ ବିଭାଗ ଓ

ପୂର୍ବତନ ଅତିରିକ୍ତ ଶାସନସଚିବ, ଶିକ୍ଷା ଓ ଯୁବକଲ୍ୟାଣ ବିଭାଗ, ଓଡ଼ିଶା, ଭୁବନେଶ୍ୱର ।

**ଶ୍ରୀ କଲ୍ୟାଣ ମହାପାତ୍ର**

ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ରାଣୀହାଟ ହାଇସ୍କୁଲ, କଟକ ।

**ପ୍ରଫେସର ଡାକ୍ତର ନଳିନୀ ନାୟକ**

ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପିକା, ଜୀବରସାୟନ ବିଭାଗ,

ଶ୍ରୀରାମଚନ୍ଦ୍ରଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ, କଟକ ।

**ପ୍ରଫେସର ଡାକ୍ତର ନିମାଇଁ ଚରଣ ପରିଡ଼ା**

ଅବସରପ୍ରାପ୍ତ ପ୍ରଫେସର, ନିଦାନ ବିଭାଗ

ଆଚାର୍ଯ୍ୟ ହରିହର ଆଞ୍ଚଳିକ କର୍କଟରୋଗ ଚିକିତ୍ସା ଓ ଗବେଷଣା କେନ୍ଦ୍ର, କଟକ ।

**ପ୍ରଫେସର ଡକ୍ଟର ବସନ୍ତ କୁମାର ବେହୁରା**

ଅବସରପ୍ରାପ୍ତ ପ୍ରାଣିବିଜ୍ଞାନ ମୁଖ୍ୟ ଅଧ୍ୟାପକ ଓ ପୂର୍ବତନ କୁଳପତି,

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

**ଡାକ୍ତର ଅରୋ ବିଶ୍ୱବନ୍ଧ୍ୟ**

ସହଯୋଗୀ ଅଧ୍ୟାପକ, ରକ୍ତରୋଗ ବିଭାଗ

ଖ୍ରୀଷ୍ଟିଆନ୍ ମେଡ଼ିକାଲ୍ କଲେଜ, ଭେଲ୍ଲୋର ।

**ପ୍ରଫେସର ଡକ୍ଟର କୁଳମଣି ସାମଲ**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ପଦାର୍ଥ ବିଜ୍ଞାନ ବିଭାଗ
ବିଶ୍ୱବିଦ୍ୟାଳୟ ଇଂଜିନିୟରିଂ କଲେଜ, ବୁର୍ଲା, ସମ୍ବଲପୁର ।

**ପ୍ରଫେସର ଡାକ୍ତର ବାସନ୍ତୀ ବହିଦାର**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପିକା,
ପ୍ରସୂତି ଓ ସ୍ତ୍ରୀରୋଗ ବିଭାଗ, ଶ୍ରୀରାମଚନ୍ଦ୍ରଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ, କଟକ ।

**ପ୍ରଫେସର ଡାକ୍ତର ଇନ୍ଦ୍ରମଣି ପତି**
ଅବସରପ୍ରାପ୍ତ ଅତିରିକ୍ତ ସଚିବ,
ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ, ଓଡ଼ିଶା, ଭୁବନେଶ୍ୱର ।

**ଡକ୍ଟର ସୁବାସିନୀ ଲେଙ୍କା**
ଅବସରପ୍ରାପ୍ତ ପ୍ରାଧ୍ୟାପିକା, ରସାୟନ ବିଜ୍ଞାନ ବିଭାଗ,
ରେଭେନ୍ସା ମହାବିଦ୍ୟାଳୟ, କଟକ ।

**ଇଂ. ମାୟାଧର ସ୍ୱାଇଁ**
ଡେପୁଟି ଜେନେରାଲ୍ ମ୍ୟାନେଜର, ମେକନ୍, ରାଞ୍ଚି ।

**ସ୍ୱର୍ଗତ ଲକ୍ଷ୍ମୀନାରାୟଣ ନନ୍ଦ**
ଅବସରପ୍ରାପ୍ତ ସାଇଣ୍ଟିଫିକ୍ ଅଫିସର
ଓଡ଼ିଶା ଡ୍ରଗ୍ ଟେଷ୍ଟିଂ ଲାବୋରେଟୋରିଜ୍, ଭୁବନେଶ୍ୱର ।

**ସ୍ୱର୍ଗତ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ**
ପୂର୍ବତନ ପ୍ରାଧ୍ୟାପକ ଓ ମୁଖ୍ୟ, ଭୂଗୋଳ ବିଭାଗ,
ରେଭେନ୍ସା ମହାବିଦ୍ୟାଳୟ, କଟକ ।

**ଡାକ୍ତର ଅଂଜଳି ମହାପାତ୍ର**
ସହକାରୀ ଅଧ୍ୟାପିକା, ବୃକ୍କ ରୋଗ ବିଭାଗ
ଖ୍ରୀଷ୍ଟିଆନ୍ ମେଡ଼ିକାଲ୍ କଲେଜ, ଭେଲ୍ଲୋର ।

**ପ୍ରଫେସର ଡକ୍ଟର ମାଧବ ଚନ୍ଦ୍ର ଦାଶ**
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଜୀବ ବିଜ୍ଞାନ ବିଭାଗ ଓ ପୂର୍ବତନ କୁଳପତି,
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବୁର୍ଲା, ସମ୍ବଲପୁର ।

# ସହାୟକ ଗ୍ରନ୍ଥସୂଚୀ

୧ । ଭାରତୀୟ ବୈଜ୍ଞାନିକ,
ପ୍ରକାଶକ - ବିଜ୍ଞାନ ପ୍ରଚାର ସମିତି, କଟକ

୨ । Achievements in Anonymity,
Editors - Kollegala Sharma and Bal Phondke
Publications and Information Directorate (CSIR)
Dr. K. S. Krishnan Marg, New Delhi - 110012

୩ । Great Women of Sciences
Author - Asoke K Bagchi
Konark Publishers Pvt. Ltd.
A - 149, Main Vikash Marg, Delhi - 110092

୩ । ଭାରତକେ ମହାନ୍ ବୈଜ୍ଞାନିକ (ହିନ୍ଦୀ)
ଲେଖକ - ଅରୁଣ ସାଗର
ରାଜା ପକେଟ ବୁକ୍ସ
୩୩୦ / ୧, ମେନ୍‌ରୋଡ୍, ବୁରାଡ଼ୀ, ଦିଲ୍ଲୀ - ୧୧୦୦୮୪

୫ । Jai Scienlists
Author - Dr. O. A. Sarma
R. K. Publications, Nampally, Hyderabad - 1

୬ । Rishis, Mystics and Heroes of India, Vol - I
by - Sadhu Mukund Charan Das
Swaminarayan Aksharpith
Shahibaug Road, Amdavad - 4, India

୭ । Encyclopaedia of Indian Scientists
(From Ancient to Contemporary)
by Anjana Chattopadhyay
Reliance Publishing House
3026/7H, Ranjit Nagar, New Delhi - 110008

୮ । Lilavati's Daughters
The Women Scientists of India
Editors - Rohini Godbole and
Ram Ramaswamy, Indian Academy of Sciences
Bangalore

୯ । Path to Greatness in Science
by J. Radhakrishnan
Publications Division,
Ministry of Information and Broadcasting,
Government of India
Patiala House, New Delhi - 10001



ଭାରତର ବିଜ୍ଞାନ ଇତିହାସ ଖୁବ୍ ପ୍ରାଚୀନ ଏବଂ ଖୁବ୍ ସମୃଦ୍ଧ ମଧ୍ୟ । ପାଶ୍ଚାତ୍ୟ ବୈଜ୍ଞାନିକଙ୍କ ତୁଳନାରେ ଭାରତୀୟ ବୈଜ୍ଞାନିକଙ୍କ ଅବଦାନ କୌଣସି ଗୁଣରେ ନ୍ୟୂନ ନୁହେଁ । ତେଣୁ ପାଠକମାନଙ୍କୁ ଭାରତୀୟ ବୈଜ୍ଞାନିକମାନଙ୍କ ସଂପର୍କରେ ପରିଚିତ କରାଇବା ଉଦ୍ଦେଶ୍ୟରେ 'ଭାରତର ବିଖ୍ୟାତ ବୈଜ୍ଞାନିକ' ପୁସ୍ତକ ରଚିତ ।

ଜୀବନୀ ପଠନରୁ ପ୍ରେରଣା ମିଳେ । ମିଳେ ମାର୍ଗ ଦର୍ଶନ । ସୃଜନୀ ଶକ୍ତିକୁ ସମୃଦ୍ଧ କରିବା, ଚିନ୍ତାକୁ ଉନ୍ନତ କରିବା ଏବଂ ବିଶ୍ୱବାସୀଙ୍କର ମଙ୍ଗଳ କାମନା କରିବାରେ ଏହା ଯଥେଷ୍ଟ ସହାୟକ ହୋଇଥାଏ ।

ଇଂରେଜ ପ୍ରାବନ୍ଧିକ ତଥା ଐତିହାସିକ ଥୋମାସ୍ କାରଲାଇଲ୍‌ଙ୍କ ମତରେ "ଜୀବନୀ ପଠନ ସବୁଠାରୁ ବଳି ଲାଭପ୍ରଦ ।"

ଆମର ଆଶା ଓ ବିଶ୍ୱାସ ଯେ ପୁସ୍ତକଟି ପାଠକମାନଙ୍କ ଆଦୃତି ଲାଭ କରିବ ଏବଂ ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ପାଇଁ ଉପାଦେୟ ବିବେଚିତ ହେବ ।

-ପ୍ରକାଶକ

ସଙ୍ଘମିତ୍ର ପ୍ରକାଶନୀ